# ଭସ୍ମ-ରାଶୀ

ଲେଖକ

ଶ୍ରୀ ନବକିଶୋର ଦାସ ବ. ଏଲ୍

ପ୍ରଥମ ମୁଦ୍ରଣ

୧୯୫୬

ପ୍ରକାଶକ

ଦି ଉତ୍କଳ ଷ୍ଟୋର୍ସ

ବାଲୁବଜାର,

କଟକ—୨

ମୂଲ୍ୟ ଟ ୨ ୯ ଦୁଇ ଟଙ୍କା ମାତ୍ର

## ସୂଚୀପତ୍ର

# ଲେଖକଙ୍କ ମନ୍ତବ୍ୟ

'ବିଶ୍ୱବାଣୀ' ଅନ୍ତର୍ଗତ ପ୍ରବନ୍ଧ ଗୁଡ଼ିକରୁ ଅଧିକାଂଶ ୧୯୬୭ ମସିହାରେ ଲିଖିତ । କେତେ ଗୁଡ଼ିଏ ପ୍ରବନ୍ଧ ତାହା ପରବର୍ଷ ଲିଖିତ । ପ୍ରବନ୍ଧଗୁଡ଼ିକରୁ କେତେକ ଲେଖକ ଉତ୍କଳ ଭ୍ରମଣ ସମୟରେ ନାନା ସଭାରେ ପଢ଼ିଥିଲେ । 'ଅନନ୍ଦ' ଷଢ଼େଇକଲାରେ, 'ରହସ୍ୟବାଦ' ବାରିପଦାରେ, 'ବୁଦ୍ଧତ୍ୱ' ଏବ 'ଦର୍ଶନ ଓ ଜୀବନ' କେନ୍ଦୁଝରରେ, 'ଆମ ଜୀବନ' ଓ 'ଜୀବନ ପୂଜା' ଖରସୁଆଁରେ ପଠିତ ହୋଇଥିଲା । ଏଗୁଡ଼ିକ ମଧ୍ୟ ଓଡ଼ିଶାର ନାନା ପତ୍ରିକା—ନବଭାରତ, ସହକାର, ଭକ୍ତିପ୍ରଦୀପ, ବନବୀଣା ପ୍ରଭୃତିରେ ପ୍ରକାଶିତ ହୋଇଥିଲା । ଏହିସବୁ ପ୍ରବନ୍ଧଗୁଡ଼ିକୁ ସଂଗ୍ରହ କରି ଏହି ବହି ପ୍ରକାଶ କରାଯାଉଅଛି । ଉତ୍କଳ ବିଶ୍ୱବିଦ୍ୟାଳୟ ବହି ମୁଦ୍ରଣର ଏକତୃତୀୟାଂଶ ବହନ କରି, ସେହି ମୂଲ୍ୟର ବହି କିଣିବାରେ ଧନ୍ୟବାଦର ପାତ୍ର ହୋଇଛନ୍ତି । ମୋର ସହପାଠୀ ଉତ୍କଳ ବୁକ୍-ଷ୍ଟୋର୍ସର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଦୟାନିଧି ମିଶ୍ର ବି. ଏଲ୍. ପୁସ୍ତକର ପ୍ରକାଶକ ହେବାରେ ଅଗ୍ରଣୀ ହୋଇ ମଧ୍ୟ ମୋତେ ଆନନ୍ଦ ଦେଇଛନ୍ତି । ସର୍ବୋପରି ଅଧ୍ୟାପକ ଗିରିଜାଶଙ୍କର ରାୟ ମହାଶୟ ତାଙ୍କ ବହୁମୂଲ୍ୟ ସମୟ ନଷ୍ଟ କରି ଏକ "ଅବତରଣିକା" ଲେଖି ବହିର ମୂଲ୍ୟ ବଢ଼ାଇଚନ୍ତି ।

ବିଶ୍ୱ-ବାଣୀ ଦେଶର ଚିନ୍ତାଶୀଳ ବ୍ୟକ୍ତି ତଥା ଉଚ୍ଚ ଶିକ୍ଷିତ ଛାତ୍ର, ଛାତ୍ରୀମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ । ମଣିଷ ଜୀବନର କେତେକ ଗମ୍ଭୀର ସମସ୍ୟା ସମ୍ପର୍କରେ ଏ ଆଲୋଚନା । ଜୀବନ ସମ୍ପର୍କରେ ଯେଉଁମାନଙ୍କର ଆଗ୍ରହ, ସେମାନେ ଏହି ବହି ପ୍ରତି ଆଗ୍ରହ ଦେଖାଇବେ ବୋଲି ତ ଲେଖକର ବିଶ୍ୱାସ । ବହିର ମୂଲ୍ୟ ନିର୍ଦ୍ଧାରକ ପାଠକ-ପାଠିକା ।

ନବକିଶୋର ଦାସ

# ଅବତରଣିକା

ଗ୍ରନ୍ଥକାର ମୋର ଛାତ୍ରମାନଙ୍କ ମଧ୍ୟରୁ ଜଣେ, ତାଙ୍କର ଅନୁରୋଧ ଏଡ଼ି ନ ପାରି ଏହି ମୁଖବନ୍ଧଟି ଲେଖିବାକୁ ବାଧ୍ୟ ହେଲି। ଗ୍ରନ୍ଥଟି କେତେ ଗୁଡ଼ିଏ ପ୍ରବନ୍ଧର ସମଷ୍ଟି। ସଂସ୍କୃତରେ 'ପ୍ରବନ୍ଧ' ଶବ୍ଦ ଯେଉଁ ଅର୍ଥରେ ବ୍ୟବହୃତ ହେଉଥିଲା, ବର୍ତ୍ତମାନ ସେହି ଶବ୍ଦର ସେହି ନିର୍ଦ୍ଦିଷ୍ଟ ଅର୍ଥରେ ବ୍ୟବହାର ନାହିଁ। 'ପ୍ରବନ୍ଧ' କହିଲେ ଆମ୍ଭେମାନେ ବର୍ତ୍ତମାନ ଇଂରାଜୀ 'Essay' ଶବ୍ଦର ପ୍ରତିଶବ୍ଦ ବୁଝୁଁ ଅର୍ଥାତ୍ ଗଦ୍ୟରେ କୌଣସି ଲଘୁନିବନ୍ଧ; ଆକାରରେ କ୍ଷୁଦ୍ର, ଗୁଣରେ ଲଘୁ, ପ୍ରକାଶଭଙ୍ଗୀରେ ସରସ, ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସହଜ ସରଳ ଗଦ୍ୟମୟ ପ୍ରକାଶକୁ ପ୍ରବନ୍ଧ ବୋଲଯାଏ। ପ୍ରବନ୍ଧର କୌଣସି ସଂଜ୍ଞା ନାହିଁ, କାହାରି କାହାରି ବିଷୟରେ ଏହା ଲଘୁ ବିଷୟର ସରସ ଆଲୋଚନା; ଅନ୍ୟ କେତେକଙ୍କ ମତରେ ଏହା ବ୍ୟକ୍ତିଗତ ଚିନ୍ତାର ଅବାଧ ବହିଃପ୍ରକାଶ। ଆଲୋଚ୍ୟ ଗ୍ରନ୍ଥଟିର ବିଷୟବସ୍ତୁ ଲଘୁ ନୁହେଁ, ଅନେକ ସମୟରେ ଦୁରୂହ ଦାର୍ଶନିକତତ୍ତ୍ୱମାନଙ୍କର ପ୍ରକାଶରେ ସରଳତା ରକ୍ଷା କରିବା ମଧ୍ୟ ଅସମ୍ଭବ। କିନ୍ତୁ ଏ ସବୁ ସତ୍ତ୍ୱେ ଏହା ପ୍ରବନ୍ଧ ଗ୍ରନ୍ଥ, କାରଣ ଏହା ବିଭିନ୍ନ ବିଷୟରେ ବ୍ୟକ୍ତିଗତ ଚିନ୍ତା, ଜୀବନର ବିଭିନ୍ନ ଦିଗର ଆଲୋଚନାସମ୍ବଳିତ କ୍ଷୁଦ୍ର ଗଦ୍ୟ ରଚନାର ସମଷ୍ଟି। ଇତି ପୂର୍ବରେ ନବକିଶୋର କବି ରୂପରେ ଖ୍ୟାତି ଲାଭ କରି ପାରିଥିଲେ, ଅନେକ ଦିନ ପର୍ଯ୍ୟନ୍ତ ରହସ୍ୟବାଦ ଦ୍ୱାରା ଅନୁପ୍ରାଣିତ ତାଙ୍କର ଅନେକ ଗୁଡ଼ିଏ କବିତା ପ୍ରକାଶିତ ହୋଇଥିଲା। କିଛିଦିନ ପୂର୍ବେ 'ନୂତନ ବାଦ'ର ଅବତାରଣା କରି ସେ ଗୋଟିଏ ବିଶିଷ୍ଟ ଦାର୍ଶନିକ ଚିନ୍ତା ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ। ବର୍ତ୍ତମାନ ଗ୍ରନ୍ଥରେ ସେ ତାଙ୍କର ନୂତନ ଚିନ୍ତାଧାରାକୁ ସନ୍ନିବେଶିତ କରିଅଛନ୍ତି।

ଗ୍ରନ୍ଥଟିର ନାମ ବିଶ୍ୱ-ବାଣୀ। ମନୁଷ୍ୟ ନିଜର କ୍ଷୁଦ୍ରତା ଦ୍ୱାରା ପିଣ୍ଡ ଓ ନିବଦ୍ଧ ହୋଇ ବିଶ୍ୱ ସହିତ ସମ୍ପର୍କ ବିସ୍ମୃତ ହୁଏ। ପ୍ରତ୍ୟେକ ଘଟଣାକୁ ବିଚ୍ଛିନ୍ନ ଭାବରେ ଦେଖିବାକୁ ଶିଖେ, ଜୀବନକୁ ବିଶ୍ୱ ନିରପେକ୍ଷ ଭାବରେ ଅଯୁକ୍ତ କରି ରଖିବାକୁ ଚାହେଁ, କିନ୍ତୁ ଏହାରି ଦ୍ୱାରାହିଁ ତାହାର ଜୀବନରେ ନାନା ସମସ୍ୟା ଜାତ ହୋଇଥାଏ। ବିଶ୍ୱକୁ ଯେବେ ମନୁଷ୍ୟ ବିରାଟ, ଅମର,

ସ୍ଥାନକାଳଜୟୀ ମହା ମାନବ; ଈଶ୍ୱର ଅଂଶ ରୂପରେହିଁ ତାହାର ବାସ୍ତବ ଅସ୍ତିତ୍ୱ । କିନ୍ତୁ ମନୁଷ୍ୟ ଯେତେବେଳେ ନିଜକୁ ଜାତି, ଦେଶ, ଗୋଷ୍ଠୀର ଅଂଶରୂପେ ଚିନ୍ତାକରି ନିଜର ଅସ୍ତିତ୍ୱକୁ କ୍ଷୁଦ୍ର କରିଦିଏ ସେତେବେଳେ ତାହାର ମହତ୍ତ୍ୱ ମଧ୍ୟ ବିନଷ୍ଟ ହୋଇଯାଏ । ଏହି ଚିନ୍ତାଧାରାହିଁ 'ବିଶ୍ୱ-ବାଣୀ' ନାମର ସାର୍ଥକତା ପ୍ରତିପାଦନ କରୁଅଛି, ଯେଉଁ ବାଣୀ ଈଶ୍ୱର ମନ୍ତ୍ରେ ମନ୍ତ୍ରେ ସ୍ପନ୍ଦିତ, ଯାହାଦ୍ୱାରା ସମଗ୍ର ବିଶ୍ୱ ଅନୁପ୍ରାଣିତ, ଯେଉଁ ଏକତାବୋଧ ଉପରେ ମନୁଷ୍ୟର ମାନବିକତା ପ୍ରତିଷ୍ଠିତ, ତାହାହିଁ ବିଶ୍ୱ-ବାଣୀ, ତାହାହିଁ ଏହି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ ।

ବହୁ ପ୍ରାଚୀନ ଯୁଗରୁ ଏହି ବିଶ୍ୱ ସଙ୍ଗୀତର କଳ୍ପନା ସାହିତ୍ୟରେ ସ୍ଥାନ ପାଇଥିଲା । କ୍ଷୁଦ୍ର ମାନବ ଜୀବନର ଅକିଞ୍ଚିତ୍କରତ୍ୱ ଭୁଲି ଯାଇ ଅମୃତର ସନ୍ଧାନରେ ବ୍ୟସ୍ତ ହେଲେ, ଯାହାଦ୍ୱାରା ଅମରତ୍ୱ ଲବ୍ଧ ହୋଇ ନ ପାରିବ ତାହା ତ୍ୟାଗ କରିବା ନିମନ୍ତେ ଉତ୍ସାହିତ ହେଲେ । ସେ ସମୟରେ ଆମ୍ଭ-ମାନଙ୍କର ଧାରଣା ଥିଲା ଯେ ପାପହିଁ ଆମ୍ଭମାନଙ୍କୁ ବିଶ୍ୱ-ସଙ୍ଗୀତ ମୂର୍ଚ୍ଛନାରୁ ଦୂରରେ ରଖୁଅଛି, ସଂସାରର ଦୁଃଖାନୁଭୂତ ଆମ୍ଭମାନଙ୍କୁ ଐହିକ ଓ ପାର-ତ୍ରିକ ସୁଖ ପ୍ରତି ଆକୃଷ୍ଟ କରୁଅଛି । ମାର ନାନା ପ୍ରଲୋଭନ ଦେଖାଇ ଆମ୍ଭମାନଙ୍କୁ ନିର୍ବାପନରୁ ବିଚ୍ୟୁତ ହେବାକୁ ଚେଷ୍ଟା କରୁଅଛି । ମନୁଷ୍ୟର ଚିନ୍ତା ବହୁ ଧାରାରେ ପ୍ରବାହିତ ହୋଇଅଛି । ଏକ ଦିଗରେ ରାଜନୀତିର ଆବର୍ତ୍ତ, ଅନ୍ୟ ଦିଗରେ ବିଜ୍ଞାନର ଶକ୍ତିସନ୍ଧାନ ନୂତନ ଚେତନା ଆଣି ଦେଇ ଅଛି । ଫଳରେ ମନୁଷ୍ୟ ବର୍ତ୍ତମାନ ବିଭ୍ରାନ୍ତ ହୋଇ, ବିଧ୍ୱଂସୀ ସଂଗ୍ରାମରେ ଲିପ୍ତ ହୋଇ, ନୈରାଶ୍ୟଜନିତ ଜଡ଼ତା ଦ୍ୱାରା ଗ୍ରସ୍ତ ହୋଇ ବିଶ୍ୱ-ବାଣୀକୁ ନିଜର ଜୀବନରେ ଯଥୋପଯୁକ୍ତ ସ୍ଥାନ ଦେଇ ପାରୁ ନାହିଁ ।

ବିଶ୍ୱବାଣୀର ପ୍ରଥମ ପ୍ରବନ୍ଧ 'ଆନନ୍ଦ', କାରଣ ଆନନ୍ଦରୁହିଁ ଜଗତ ଉଦ୍ଭୂତ, ଆନନ୍ଦରେହିଁ ଅବସ୍ଥିତ । କିନ୍ତୁ ବାସ୍ତବ ଆନନ୍ଦ ପାଇବାକୁ ହେଲେ 'ବୃହତ୍ତର' ବିଶ୍ୱବୋଧ ଏକାନ୍ତ ପ୍ରୟୋଜନ, ଜରା, ମୃତ୍ୟୁ, ଶୋକ ଦ୍ୱନ୍ଦ୍ୱକୁ ଅତିକ୍ରମ କରିବାକୁ ହେଲେ ଅସୀମ ଆଶାବାଦୀ ଗ୍ରନ୍ଥକାରଙ୍କ ମତରେ ସୃଷ୍ଟିର ମୂଳ ଧାର 'ବୃହତ୍ତର' ବିଷୟରେ ସଚେତ ହେବାକୁ ପଡ଼ିବ । "ଅଗ୍ନିକଣା ମଧ୍ୟ ଅଗ୍ନି", ସେହିପରି କ୍ଷୁଦ୍ରାତିକ୍ଷୁଦ୍ର ମନୁଷ୍ୟ ମହତୋମହୀୟାନ ଐଶୀ ଶକ୍ତିର ଅଂଶବିଶେଷ ଏହି ଅନୁଭୂତି ଦ୍ୱାରା ମନୁଷ୍ୟ ମଧ୍ୟରେ ଏକତା-ବୋଧ ଜାଗ୍ରତ ହେବ । ଐଶୀଶକ୍ତି ସହିତ ମାନବର ଚିନ୍ତାର ଏକତା

ସାଧିତ ହୋଇ ବିଶ୍ୱଚେତନା ଦିଗରେ ମନୁଷ୍ୟଙ୍କୁ ଅନୁପ୍ରାଣିତ କରି ତାଙ୍କୁ ବାସ୍ତବ ଆନନ୍ଦ ଦେଇ ପାରିବ ।

ଜୀବନ ଏକ ରହସ୍ୟ, 'ବୃହତ୍ତର' ବୋଧ ସହିତ କ୍ଷୁଦ୍ର ଶକ୍ତି-ଜନିତ ସୁଖ ଲିପ୍ସା ମନୁଷ୍ୟକୁ ବିଭ୍ରାନ୍ତ କରୁଅଛି, କିନ୍ତୁ ଏହି ରହସ୍ୟ ମଧ୍ୟରେ କେବଳ ମହତ୍ତର ଉପାସନା କିମ୍ବା କେବଳ ଜାଗତିକ ସମ୍ପଦ ଲାଭ ମନୁଷ୍ୟକୁ ଆନନ୍ଦ ଦେଇ ପାରେ ନାହିଁ । ଗ୍ରନ୍ଥକାର ଜାଗତିକ ଜୀବନକୁ ହେୟ ଦୃଷ୍ଟିରେ ଦେଖି ନାହାନ୍ତି କିନ୍ତୁ କ୍ଷଣିକ ବିଭବ ପ୍ରତି ଅକୃଷ୍ଟ, ହେଲେହେଁ, "ଐଷୀ ଶକ୍ତି ସର୍ବତ୍ର ଲୀଳାୟିତ" ଏହି ଧାରଣାରେ ସେ ଯୁଗ୍ମ ଦର୍ଶନ ଦ୍ୱାରା ଅନୁପ୍ରାଣିତ ହୋଇଅଛନ୍ତି । ଜୀବନର ମୂଲ୍ୟବୋଧ ସଂସାରରେ ମୂଳ କଥା; ଯେତେବେଳେ "ରହସ୍ୟବାରିଧି ଲଙ୍ଘି ଜୀବନ ମହା ମଧୁମୟ ମର୍ତ୍ତ୍ୟରେ ଅପାର ଆନନ୍ଦ ଅନୁଭବ" କରେ ସେତେବେଳେ ମନୁଷ୍ୟ ମହା ମାନବିକତା ଲାଭ କରେ, ତାହାର ଜୀବନ ଐଶୀଶକ୍ତି ଦ୍ୱାରା ଉଦ୍ବେଳ ହୋଇ ଉଠେ ।

ଗ୍ରନ୍ଥକାର ସାହିତ୍ୟିକ । ଏଣୁ ସାହିତ୍ୟରେ, ଉପନ୍ୟାସ, ନାଟକ ପ୍ରଭୃତିରେ ସେ ଏହି "ଅପରିବର୍ତ୍ତନୀୟ" ଜୀବନସତ୍ତ୍ୱର ଶିବ ପ୍ରତି ଆମ୍ଭମାନଙ୍କୁ ସଜାଗ କରି ଅଛନ୍ତି । ମାନବିକ ସ୍ପନ୍ଦନବୈଚିତ୍ର୍ୟର ଏକ ଅପରିବର୍ତ୍ତନୀୟ ଛବି ସେ ସାହିତ୍ୟରେ ଦେଖି ଅଛନ୍ତି । ଗ୍ରନ୍ଥକାର ଜଣେ ରାଜନୀତିକ, ଏଣୁ ରାଜନୀତିରେ ସୁରାଜ ଓ ସ୍ୱରାଜ ମଧ୍ୟରେ ପାର୍ଥକ୍ୟ ଉପଲବ୍ଧି କରି ଆମ୍ଭମାନଙ୍କୁ ବିଶ୍ୱ-ନୀତି ପ୍ରତି ଆକୃଷ୍ଟ କରିବାକୁ ସଚେଷ୍ଟ ହୋଇ ଅଛନ୍ତି । ଆମ୍ଭମାନଙ୍କ ମନରେ ବିଶ୍ୱବୋଧ ଜାଗ୍ରତ କରି କ୍ଷୁଦ୍ର ସ୍ୱଦେଶିକତା ପରିହାର କରି ମାନବିକତାକୁ ଅଖଣ୍ଡ ବିଶ୍ୱରାଜ୍ୟ ଉପରେ ପ୍ରତିଷ୍ଠିତ କରିବାକୁ ଅନୁପ୍ରାଣିତ କରୁଅଛନ୍ତି । ସର୍ବୋପରି ଗ୍ରନ୍ଥକାର ଜଣେ ଦାର୍ଶନିକ, ଏଣୁ ବିଶ୍ୱ କୁରୁକ୍ଷେତ୍ରର ବର୍ତ୍ତମାନ ପରିପ୍ରେକ୍ଷିରେ ସେ ନୂତନ ଜୀବନ ଗୀତା ରଚନା କରିବାକୁ ଚେଷ୍ଟାକରି ଅଛନ୍ତି ଓ ମନୁଷ୍ୟର ଆତ୍ମଜ୍ଞାନ କିପରି ବିଶ୍ୱସମ୍ମାନ ଜ୍ଞାନର ପରିପୋଷକ ତାହା ଦେଖାଇବାକୁ ଚେଷ୍ଟାକରି ଅଛନ୍ତି । ଆମର ଶାସ୍ତ୍ରର 'ଆତ୍ମାନଂ ବିଦ୍ଧି' ବା Socrates ଙ୍କ 'know thyself' କିପରି ବିଶ୍ୱବୋଧର ପରିପନ୍ଥୀ ନୁହେଁ, ତାହା ସ୍ପଷ୍ଟ ଭାବରେ ଉଲ୍ଲେଖ କରି ଅଛନ୍ତି, ଗ୍ରନ୍ଥକାରଙ୍କ ଭାଷାରେ ଜୀବନର ପୂଜାର ମୂଳମନ୍ତ୍ର ଏକତ୍ୱବୋଧ, ଦ୍ୱନ୍ଦ୍ୱର

ସମନ୍ୱୟ ମାତ୍ର ନୁହେଁ, ଦ୍ୱନ୍ଦ୍ୱ ମଧ୍ୟରେ ଏକତ୍ୱ ପ୍ରତିଷ୍ଠାହିଁ ବାସ୍ତବରେ ଜୀବନର ମନ୍ତ୍ର । ଏହି ମନ୍ତ୍ର ଦ୍ୱାରା ମନୁଷ୍ୟର ଜୀବନ ସର୍ବଦା ମହତ୍ତ୍ୱର ଆଦର୍ଶ ପ୍ରତି ସଚେତ ହୋଇ ଉଠେ ।

ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ଗ୍ରନ୍ଥର ଅଭାବ ସୁସ୍ପଷ୍ଟ, ଦାର୍ଶନିକ ପ୍ରବନ୍ଧର ଅଭାବ ଅଧିକତର ଅନୁଭୂତ । ମନୁଷ୍ୟର ଚିନ୍ତା ଯଦି କଲ୍ୟାଣ କରିବାକୁ ହୁଏ, ତେବେ ତାହା ସମ୍ମୁଖରେ ନୂତନ ମହତ୍ତ୍ୱର ଆଦର୍ଶ ସର୍ବଦା ଉପସ୍ଥାପିତ କରିବା ବିଧେୟ । ଏହି ଦିଗରୁ ଦେଖିବାକୁ ଗଲେ ଏହି ପ୍ରବନ୍ଧ ଗ୍ରନ୍ଥର ଉପାଦେୟତା ଅନସ୍ୱୀକାର୍ଯ୍ୟ । ପ୍ରବନ୍ଧ ଲେଖିବା ସୁକଠିନ, କବି ପକ୍ଷରେ ଉପାଦେୟ ଆଦର୍ଶଧର୍ମୀ ପ୍ରବନ୍ଧ ଲେଖିବା କଠିନତର; ଗ୍ରନ୍ଥକାର ଏକାଧାରରେ କବି ଓ ପ୍ରାବନ୍ଧିକ, ଏଣୁ ସ୍ଥାନେ ସ୍ଥାନେ ତାଙ୍କର ଭାଷା କାବ୍ୟଧର୍ମୀ କିନ୍ତୁ ସୁଚିନ୍ତିତ ଭାବର ଗାମ୍ଭୀର୍ଯ୍ୟ ଲାଳିତ୍ୟ ପଦର ମାଧୁର୍ଯ୍ୟ ଦ୍ୱାରା ଖଣ୍ଡିତ ହୋଇ ନାହିଁ, ଏହାହିଁ ଏ ପୁସ୍ତକର ଉପାଦେୟତା ଓ ସୁଖପାଠ୍ୟତା ପ୍ରତିପନ୍ନ କରୁଅଛି ।

ଗିରିଜା ଶଙ୍କର ରାୟ

# ବିଶ୍ୱବାଣୀ

## ଆନନ୍ଦ

ସୃଷ୍ଟି ପର୍ଯ୍ୟାୟରେ ମାନବ ଜୀବନର ବିକାଶ ନାନା ଜଟିଳତା ମଧ୍ୟରେ ସମ୍ଭବପର ହୋଇଅଛି । କେବଳ ଜୀବନ ଧାରଣ ନୁହେଁ— ମନୁଷ୍ୟର ମନ ମାନସିକ ସମାଜ, ଶାସ୍ତ୍ର, 'ଅନୁଷ୍ଠାନ ଦେଶ, କାଳ ମଧ୍ୟରେ ନାନା ଭାବ, ନାନା ସ୍ୱପ୍ନ ଯେପରି ତରଙ୍ଗ । କେତେବେଳେ କେଉଁ ଭାବ, କେଉଁ ଅନୁଭୂତି ପ୍ରବଳ ହୁଏ, କେତେବେଳେ କେଉଁ ସ୍ୱପ୍ନର ଆବେଗ ଯେପରି ଚିତ୍ତ ଚଞ୍ଚଳ ହୋଇଉଠେ । ମନୁଷ୍ୟ କେବଳ ଦେବତା କିମ୍ବା ପଶୁ ନୁହେଁ । ଏହି ଜଟିଳ ମାନସିକ ଅବସ୍ଥା ମଧ୍ୟରେ ମନୁଷ୍ୟ ଗୋଟିଏ ଆଦର୍ଶ ପଛରେ ପ୍ରଧାବିତ । ସକଳ ପରିସ୍ଥିତିରେ ମନୁଷ୍ୟ ଏକ ଆଦର୍ଶ ସତ୍ତା ଅନୁଭବ କରିବାକୁ ବ୍ୟଗ୍ର । କେହି ଧନୀ, କେହି ନିର୍ଦ୍ଧନ; କେହି ଶ୍ରମିକ, କେହି ସମ୍ରାଟ୍; କେହି ନର, କେହି ନାରୀ; କେହି ତରୁଣ, କେହି ବୃଦ୍ଧ; କେହି ରୂପବାନ୍, କେହି କୁତ୍ସିତ; ହେଲେହେଁ ସମସ୍ତେ ଏକ ଅନୁଭୂତି ଲାଭ ନିମିତ୍ତ ବ୍ୟାକୁଳ ।

ସେହି ଶ୍ରେଷ୍ଠ ଅନୁଭୂତି କ'ଣ ? ତାହାକୁ ଆନନ୍ଦ ଆଖ୍ୟା ଦିଆ-ଯାଇ ପାରେ । ଜଗତରେ ଆନନ୍ଦ କିଏ ନ ଚାହେଁ ? ଦରିଦ୍ର ପ୍ରତ୍ୟହ ଶ୍ରମଦ୍ୱାରା ମୁଣ୍ଡର ଝାଳ ତୁଣ୍ଡରେ ମାରି ନିଜର କ୍ଷୁଦ୍ର ସମ୍ବଳ ବୃଦ୍ଧି କରିବାକୁ ବ୍ୟଗ୍ର; କାରଣ ସେ ଆଉ ଟିକିଏ ଆନନ୍ଦ ପାଇବ । ତାହାର ଜୀବନଯାପନର ମାନ ଆଉ ଟିକିଏ ବୃଦ୍ଧି ପାଇବ । ଲକ୍ଷପତି ମଧ୍ୟ ଆଉ କେତେ 'ଲକ୍ଷ ମୁଦ୍ରା ଚାହୁଁଅଛି; କାରଣ ତାହାର ଆନନ୍ଦ ସେହି ମୁଦ୍ରା ପ୍ରାପ୍ତିରେ । ମନୁଷ୍ୟ ଆଶାଶୀଳ ଜୀବ । ଜଗତ ଓ ସୃଷ୍ଟି ମଣ୍ଡଳରେ ଏହି ଅମୃତ-ଆନନ୍ଦ ପ୍ରାପ୍ତିହିଁ ଆଶା । ଆଶା ନାନା ଦିଗରେ ସମ୍ଭବ ହୋଇପାରେ । କେହି ରୂପବତୀ

ନାମ ପାଇଁ, କେହୁ ରାଜ୍ୟ ପାଇଁ, କେହୁ ଧନ ପାଇଁ; ପୁଣି ଅନ୍ୟ ପକ୍ଷରେ କେହୁ ସତ୍ୟ, ସେବା, ପରୋପକାର, ଜାତି ବା ଦେଶ ଲାଗି ସକଳ ସ୍ୱାର୍ଥ ବଳି ଦାନରେ ସୁଖ ପାଉଅଛନ୍ତି । ଆନନ୍ଦ ଲାଭ ନାନା ଅଭୂତ ହୋଇ-ପାରେ । ଆନନ୍ଦ ପ୍ରାପ୍ତି ନାନା ବସ୍ତୁ, ନାନା ଭାବଦ୍ୱାରା ସମ୍ଭବପର । ହେଲେହେଁ ସମସ୍ତେ ଯେ ଆନନ୍ଦ ପ୍ରାପ୍ତି ପାଇଁ ପ୍ରଧାବିତ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଆଶାକୁ ଅବଲମ୍ବନ କରି ମାନବର ମାନସର ଗତି । ଆଶାର ପରିଣତି ଆନନ୍ଦ । ଆଶାଶୂନ୍ୟ ମନୁଷ୍ୟ ସଂସାରରେ ନାହାନ୍ତି । ଏପରି କି ଯେଉଁ ଅର୍ହତ ଜନ ସଂସାରରେ ସକଳ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇ ବୁଦ୍ଧତ୍ୱର ଆଦର୍ଶ ଅଭିମୁଖରେ ଯାତ୍ରୀ, ସେ କଅଣ ଆଶାଶୂନ୍ୟ ? ଲକ୍ଷ୍ୟ ବସ୍ତୁର ମାତ୍ର ପାର୍ଥକ୍ୟ ହୋଇପାରେ । 'ଜୀବନ୍ମୁକ୍ତ' ମଧ୍ୟ ଆଶାଶୂନ୍ୟ ନୁହନ୍ତି । ଉଚ୍ଛ୍ୱାସ-ନିଶ୍ୱାସ ଏକ ଜୀବନର ଆଶା ଓ ଆନନ୍ଦ । କିନ୍ତୁ ଜଗତରେ ଆନନ୍ଦ କାହିଁ ? ମୃତ୍ୟୁ, ବ୍ୟାଧି, ଜରା, କ୍ଷୟରେ ବିଶ୍ୱ ବ୍ୟଥିତ । ଅଗଣିତ ବାଧା, ବିଘ୍ନରେ ମାନବ ଚିତ୍ତ ସତତ ବିଚଳିତ । ଏହା ଉପରେ ପୁଣି ବିଶୃଙ୍ଖଳତା, ଅର୍ଥନୀତିକ ଦ୍ୱନ୍ଦ୍ୱ, ଦୁର୍ଦ୍ଦଶା ଅଛି । ନାନା ଅଭାବ ଅସୁବିଧାର ତାଣ୍ଡବରେ ମାନବ ଅନ୍ତର ଦୁଃଖ-ଧୂଳିରେ ଧୂସରିତ । ଆମ୍ଭମାନଙ୍କର ଅତି ପ୍ରିୟ ବନ୍ଧୁ ଆମ୍ଭମାନଙ୍କୁ ପରିତ୍ୟାଗ କରିଯିବେ । କେତେ ଅବା ଗଲେଣି । ନିଜ ପ୍ରାଣର ପ୍ରିୟତମ ରୂପସୀ ପ୍ରେୟସୀର କୋମଳ କମଳ-କରର ଚମ୍ପକ-ଅଙ୍ଗୁଳିର ସୁଧା-ସ୍ପର୍ଶ କମ୍ବା ଆରକ୍ତ ଅଧରର ମଧୁଚୁମ୍ବନ ଦିନେ ସ୍ପନ୍ଦନହୀନ ହେବ । ନିଜର ପ୍ରାଣାଧିକ ପୁତ୍ର ଚନ୍ଦ୍ରାନନ ସଙ୍କାଶେ ଷଡ଼ାନନ ନିଷ୍ଠୁର ମୃତ୍ୟୁ କବଳିତ ହେବ । ଧନ କ୍ଷୟ ହୋଇଯିବ । ସୁନ୍ଦର, ସୁଶ୍ରୀ କଳେବର ଜରା, ରୋଗଗ୍ରସ୍ତ ହେବ । ଅଜ ବହୁଜନ ଦାରିଦ୍ର୍ୟ, ଦୁଃଖ, ଲାଞ୍ଛନା ପୀଡ଼ନରେ ପୀଡ଼ିତ । ବିଶ୍ୱ ଯେପରି ଅଗଣିତ ଅଧୀର ବିକଳ କାତର କଣ୍ଠ-ସ୍ୱନରେ ସର୍ବଦା ମୁଖରିତ ! ତେବେ ଆନନ୍ଦ କାହିଁ ? ସମ୍ରାଟ ଭିକ୍ଷୁ, ଧୀର ମୂର୍ଖ, ଜୀବନ ମୃତ୍ୟୁ-ସମାଧିରେ ଚିରଶାନ୍ତି । ସୁନ୍ଦର ଚିତ୍ର ଚଞ୍ଚଳ ଅଦୃଷ୍ଟିର ମଧ୍ୟରେ ନିକଟେ ନିକଟେ କାହା ଭାଗ୍ୟର ପରିଣତି କଅଣ ହେବ, କିଏ କହିବ ? ପ୍ରତ୍ୟହ ଏପରି ଅସଂଖ୍ୟ ମାନବ ଦୁଃଖର ତପ୍ତ ଲୌହ କଟାହରେ ସନ୍ତୁଳି ହେଉଅଛନ୍ତି । ମୁକ୍ତି-ପଥରେ ଦୁଃଖ-ତାଣ୍ଡବ ଧାରା-ସ୍ରୋତ ଲାଗିଅଛି । କେହୁ ବିରହରେ, ବିଚ୍ଛେଦରେ; କେହୁ ଦୁଃଖରେ, ବାଧା-ବିଘ୍ନରେ; କେହୁ ଅଭାବ, ଅସୁବିଧାରେ; କେହୁ ନୈରାଶ୍ୟ, ଶୋକ,

କଙ୍କାଳରେ; କେହି ପୀଡ଼ନରେ, ଅତ୍ୟାଚାରରେ ନିତ୍ୟ ସନ୍ତ୍ରସ୍ତ, ବ୍ୟସ୍ତ ଓ ଅର୍ଦ୍ଧମୃତ । ସର୍ବେ ଯେପରି ଦୁଃଖ-ରଥର ଦ୍ରୁତଗାମୀ ଅଶ୍ୱବୃନ୍ଦ ! ହେତୁଲବେହିଁ ପଥ ଯେପରି ମହାଦୀର୍ଘ । ଦିନ ପରେ ଦିନର ଗତି ମଧ୍ୟରେ ମାନବର ସୁଖ କାହିଁ, ଆନନ୍ଦ କାହିଁ ? ସଂସାର ଯେପରି ଏକ ଦୁଃଖ-ଚିତା ମନୁଷ୍ୟ ବଞ୍ଚିଥିଲେ ଯେପରି ଏକ ଦୁଃଖ-ଶବ !

ଏପରି ଅବସ୍ଥାରେ ମନୁଷ୍ୟ କେଉଁ ଆନନ୍ଦ ସ୍ୱପ୍ନକୁ ଆଶ୍ରୟ କରି ଜୀବନ ଯାପନ କରିବ ? ପୃଥିବୀର ସକଳ ସୁଖ ଯେପରି ଦୁଃଖ ରଙ୍ଗରେ ରଞ୍ଜିତ । ରାଜପୁତ୍ର ଗୌତମ ଦିନେ ଏହି ଦୁଃଖ-ସତ୍ୟର ଏକ ଗଭୀର ଉପଲବ୍ଧି ପରେ 'ବୁଦ୍ଧ' ହୋଇଥିଲେ । ବୁଦ୍ଧ ହେଲା ପରେ ସେ କହିଥିଲେ, "ଜଗତ ଦୁଃଖପୂର୍ଣ୍ଣ । ଦୁଃଖର କାରଣ ତୃଷ୍ଣା ଓ ତୃଷ୍ଣା ନାଶରେ ଦୁଃଖର ପରିସମାପ୍ତି ।" ଏହା ଏକ ଚରମ ମତ । କିନ୍ତୁ ସଂସାରରେ ସାମାଜିକ ମାନବ ହୋଇ ରହିବାକୁ ଗଲେ, ଆମ୍ଭେମାନେ କିଅଣ ତୃଷ୍ଣା ବା ଆଶା ଛାଡ଼ି ପାରିବା ? ଏପରିକି ଯେଉଁମାନେ ଭକ୍ତ, ସେମାନେ କିଅଣ ନିର୍ବାଣ ପ୍ରାପ୍ତି ଆଶା ବା ତୃଷ୍ଣା ପଶ୍ଚାତରେ ଧାବିତ ନୁହନ୍ତି ? ତେବେ ଆନନ୍ଦର ସ୍ୱରୂପ କିଅଣ, ଏହାର ମଣିଷ ଜୀବନରେ ସ୍ଥାନ କେଉଁଠି, ନିରାନନ୍ଦ କାହିଁକି ? ଏହିସବୁ ସମସ୍ୟାର ଏକ ସୁସମାଧାନ ପ୍ରୟୋଜନ । ମନୁଷ୍ୟ ମନ 'ଆନନ୍ଦ' ବିଷୟରେ ଗଭୀର ଭାବରେ ଭାବିବାକୁ ଶାନ୍ତ ଉଦ୍ୟତ । ଆନନ୍ଦ କିଅଣ 'ଆକାଶ କୁସୁମ' କିମ୍ବା କେବଳ ପଣ୍ଡିତଜନଙ୍କ ଅଭିଧାନରେ ଲେଖା ହେବା ଶବ୍ଦମାତ୍ର ?

ଈଶ୍ୱର ବିବେକୀର ଲକ୍ଷଣ । ମନୁଷ୍ୟତାର ପ୍ରଥମ ଓ ପ୍ରଧାନ ସ୍ମାରକ ଈଶ୍ୱର । ଈଶ୍ୱରହୀନ ମନୁଷ୍ୟ ପଶୁ । ଈଶ୍ୱର ଯାହାଙ୍କୁ ସତ୍ୟ ବୋଲି ଧରିନେଲେ ଆଉ ଈଶ୍ୱରର ପ୍ରୟୋଜନ କିଅଣ ? ଏହି ସତ୍ୟ, ଜ୍ଞାନ, ଜନ୍ମ, ମୃତ୍ୟୁପୂର୍ଣ୍ଣ, ଶାରଦେଶିଲ ପରିବର୍ତ୍ତନ ଓ ଗତିଶୀଳ ଜୀବନ-ପ୍ରବାହ ଭାରତର ମଣିଷ ଦୃଷ୍ଟି ଭିତରେ ଆଉ କିଛି ଗଭୀର ସତ୍ୟର ଅନୁସନ୍ଧାନ କରି ଆସିଅଛି । କଠ ଉପନିଷଦରେ ଆମ୍ଭେମାନେ ଏକ କାହାଣୀ ଶୁଣୁ ।

ବାଳକ ନଚିକେତା ଯମ-ଗୃହରେ ଏହି ଆଧ୍ୟାତ୍ମିକ ସତ୍ୟ ଲାଭ ପାଇଁ ବ୍ୟଗ୍ର ହୋଇଥିଲା । ସେ ସକଳ ଧନ କିମ୍ବା ଯଶ ସୁଖ ପ୍ରାପ୍ତି ଆଶାକୁ ପଦାଘାତ କରି ଯମଙ୍କୁ ପଚାରିଥିଲା—"ଭଗବନ୍, ମନୁଷ୍ୟ ମୃତ୍ୟୁ ପରେ କୁଆଡ଼େ ଯାଏ ?" ପୁଣି ବୁଦ୍ଧଦେବଙ୍କଠାରେ ସେହି ପ୍ରଶ୍ନ ଆମ୍ଭେମାନେ ପାଉଁ

'ମୈତ୍ରେୟୀ'ଙ୍କ ମୁଖରେ । ଯାଜ୍ଞବଲ୍କ୍ୟ ବନଗାମୀ । ସଞ୍ଚିତ ଧନ ନିଜର ଦୁଇ ପତ୍ନୀଙ୍କ ମଧ୍ୟରେ ବାଣ୍ଟିଦେଇ ଋଷି ବନକୁ ଯିବାବେଳେ 'ମୈତ୍ରେୟୀ' ପଚାରିଥିଲେ," ଏହା କ'ଣ ମୋତେ ଅମୃତର ସନ୍ଧାନ ଦେଇ ପାରିବ ?" ମାନବର ମାନସିକ ପ୍ରଗତି ଇତିହାସରେ ଏହି ପ୍ରଶ୍ନଗୁଡ଼ିକ ସାର । ଏହି ପ୍ରଶ୍ନର ଉତ୍ତରରେ ମନୁଷ୍ୟ କେବଳ ତାହାର ଜୀବନ ନୁହେଁ, ସକଳ ସୃଷ୍ଟିର ଏକ ମୂଳଦୁଆ ବା ଅବଲମ୍ବନ ପାଇଅଛି । ତାହା ହୋଇ ନଥିଲେ, ମନୁଷ୍ୟ ପ୍ରକୃତରେ ସୃଷ୍ଟି ବାହାରର ଦୁଃଖଦାୟକ ପ୍ରକ୍ରିୟାରେ ଶାନ୍ତି କିମ୍ବା ଆନନ୍ଦ ପାଇ ପାରନ୍ତା ନାହିଁ । ଏହାହିଁ ଦର୍ଶନର ଭିତ୍ତି । ଦର୍ଶନ ଏକ ସୃଷ୍ଟିଶୂନ୍ୟ ବାଣୀ ପ୍ରଚାର କରିବାକୁ ଉଦ୍ଦିଷ୍ଟ ନୁହେଁ । ଏହା ମାନବ ଜୀବନର ଗଭୀର ଅନୁଭୂତିର ପ୍ରକାଶ ମାତ୍ର । ଯାହା କ୍ଷଣିକ, କ୍ଷୁଦ୍ର, ଯାହା ଅସ୍ଥାୟୀ, ପରିବର୍ତ୍ତନଶୀଳ, ତାହା ମନକୁ କିପରି ଏକ ସ୍ଥାୟୀ ଆନନ୍ଦ ଦେବାକୁ କ୍ଷମ ହେବ ? ରୂପବତୀ ଯୁବତୀ ନବବଧୂର ଆରକ୍ତିମ ଅଧର, କୃଷ୍ଣକୁଞ୍ଚିତ ଜଳଦନିନ୍ଦିତ କବରୀ, ଓଗୋଲାପ ଗଣ୍ଡଯୁଗଳ, ମୃଣାଳ ବାହୁଦ୍ୱୟ, ଚିରଚଞ୍ଚଳ ଖଞ୍ଜନ-ନୟନର ଚଟୁଳ ହୋଳା ଦ୍ୱୟ ଭୋଳା ପ୍ରେମିକ ପ୍ରାଣରେ କି ଅନିର୍ବଚନୀୟ ଆନନ୍ଦ ନ ଦିଏ ? ଯୁବକ ରୂପ-ମଦିରା ପାନରେ ଆତ୍ମବିସ୍ମୃତ ହୁଏ । କିନ୍ତୁ ପୁଣି ଅଳ୍ପ କେତେବର୍ଷ ପରେ ଯେତେବେଳେ ସେହି ରୂପ-ବାଳା ପ୍ରସୂତି-ରୋଗରେ ଦେହତ୍ୟାଗ କରେ, ସେତେବେଳେ କି ଅବସ୍ଥା ? ପ୍ରେମିକର ମନ ସେତେବେଳେ କିପରି ? ଯେଉଁ ଶିଶୁ ପ୍ରଭାତର ଢଳ ଢଳ ଚକ୍ଷୁ, ସରଳ ହାସ୍ୟଚ୍ଛଟା ଛୋଟ ଛୋଟ ଦାନ୍ତ ଦୁଇଟିର କୋମଳ କୁହୁକ ପୂର୍ଣ୍ଣ ପିତାମାତାଙ୍କୁ ସୁଖ-ସ୍ୱର୍ଗର ଗୃହ ଚିତ୍ର ଦେଖାଇ ଆତ୍ମ-ବିସ୍ମୃତ କରାଏ, ପୁଣି ତାହାର ମୃତ୍ୟୁରେ ଶୋକାକ୍ରାନ୍ତ ପିତାମାତାଙ୍କ ଚିତ୍ତ କିପରି ଦୁଃଖ-ଦାବାନଳରେ ଦଗ୍ଧ ନ ହୁଏ ? ତେଣୁ ବିଚାର—ଆନନ୍ଦ କ'ଣ ଏହି ପରିବର୍ତ୍ତନଶୀଳ ଦୁଃଖ-ପୂର୍ଣ୍ଣ ସଂସାରରେ ସମ୍ଭବପର ? ନିରବଚ୍ଛିନ୍ନ ଆନନ୍ଦ ଉପଲବ୍ଧି କରିବା ପୂର୍ବରୁ ଆମ୍ଭମାନଙ୍କର ସୃଷ୍ଟିତତ୍ତ୍ୱ ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଥିବା ବାଞ୍ଛନୀୟ ।

ଏହି ସର୍ବବ୍ୟାପୀ, ସର୍ବଶକ୍ତିମାନ, ଅବାଧ, ଅସୀମ, ଅନନ୍ତ ଶକ୍ତିର ସୃଷ୍ଟି ତାର ଲୀଳାସୃଷ୍ଟି । ଏହା ମୋର ଗଭୀର ବିଶ୍ୱାସ । ଏହା ଅମୃତ; ତେଣୁ ଅକଳ୍ପ । ଯୋଗୀମାନେ ଦୃଷ୍ଟିରୁ ସେହି ସତ୍ ଚିତ୍ ଆନନ୍ଦ । ସେହି ଶକ୍ତି ମୋ ଭିତରେ, ତୁମ୍ଭ ଭିତରେ ଓ ସାରା ସୃଷ୍ଟିର ଅନ୍ତରରେ । ଅର୍ଥାତ୍ "ମୁଁ" ଅମୃତ । ମୁଁ କ୍ଷୟ, ବୃଦ୍ଧି, ଜନ୍ମ, ଜରା, ମୃତ୍ୟୁର ଅଧୀନ

ନୁହେଁ । ଏହି ସଂକ୍ଷିପ୍ତ, ସରଳ ଆତ୍ମ-ତତ୍ତ୍ୱ ଜୀବନର ଏକ ଦୃଢ଼ ଭିତ୍ତି ଦେବାକୁ ସମ୍ଭବପର । ଏହି ଶକ୍ତି-ବିଶ୍ୱାସ ପରେ ପୁଣି ଆଉ ଏକ କଥା ବୁଝିବାର ଅଛି । କର୍ମ-ନିୟମଟିକୁ ଠିକ୍ ଭଲଭାବରେ ବୁଝିବାକୁ ଚେଷ୍ଟା କରିବା ଦରକାର । ମନୁଷ୍ୟ ଜୀବନ-ତାଅସ ଖେଳରେ କେତେଗୁଡ଼ିଏ ତାଅସ ପାଇଅଛି । ତାଅସ ପ୍ରଦତ୍ତ; କିନ୍ତୁ ଖେଳିବାର ସ୍ୱାଧୀନତା ମନୁଷ୍ୟର ଅଛି । ମନୁଷ୍ୟ ନିଜର ବୁଦ୍ଧି ଖଟାଇ ଯେପରି ଖେଳିବ, ସେହିପରି ଜିତିବ ବା ହାରିବ । ସୁକର୍ମର ଫଳ କଲ୍ୟାଣପ୍ରଦ ଓ ମନ୍ଦ କର୍ମର ଫଳ ଦୁଃଖଦାୟକ । ମୁଁ ଯଦି ସୁକର୍ମ କରିବି, ତେବେ ମୋର ଜୀବନ କଲ୍ୟାଣମୟ ହେବ । ଯଦି ମୁଁ କୁକର୍ମ କରିବି, ତେବେ ମନ୍ଦ ଫଳରୁ ମୋତେ କିଏ ତ୍ରାଣ କରି ପାରିବ ? ଏହି ହେଲା ମୋଟାମୋଟି କର୍ମନିୟମ । ଏହାକୁ ଭିତ୍ତି କରି ପୁନର୍ଜନ୍ମ । ତାହା ଏଠାରେ ଆମ୍ଭମାନଙ୍କର ଆଲୋଚ୍ୟ ବିଷୟ ନୁହେଁ । କିନ୍ତୁ ଆତ୍ମତତ୍ତ୍ୱ ଓ କର୍ମ ନିୟମକୁ ମନୁଷ୍ୟ ଠିକ୍ ଭାବରେ ଉପଲବ୍ଧି କଲେ ଆଉ ଜୀବନରେ ନିରାନନ୍ଦ ପାଇଁ ଅବକାଶ କେଉଁଠି ରହେ, ମୁଁ ବୁଝିପାରେ ନାହିଁ । ଯେଉଁମାନେ ଭାବନ୍ତି ଯେ, ସଂସାରରେ ସାମାଜିକ ମନୁଷ୍ୟ ହୋଇ ରହିବା ଦୁଃଖ, ଆଉ ସନ୍ନ୍ୟାସୀ ହେବା ସୁଖ; ମୁଁ ସେମାନଙ୍କ ସହିତ ଏକମତ ନୁହେଁ । ମନୁଷ୍ୟର ଆନନ୍ଦ-ଭୂମିରେ କ୍ରମଅଗ୍ରଗତି ସମ୍ଭବପର । ସଂସାରୀର ଆନନ୍ଦ, ଆଉ ସନ୍ନ୍ୟାସୀର ଆନନ୍ଦ-ବୋଧ ମଧ୍ୟରେ ଗୁଣଗତ ପାର୍ଥକ୍ୟ ନାହିଁ, ପରିମାଣଭେଦ ସମ୍ଭବପର । ସୃଷ୍ଟି ସୁନ୍ଦର । ଆମର ଚତୁଃପାର୍ଶ୍ୱରେ ଏକ ଅପୂର୍ବ, ଅନିନ୍ଦ୍ୟ ସୁନ୍ଦର ପ୍ରକୃତିର ରାଜ୍ୟ ବିରାଜିତ । ନଭର ନୀଳିମା, ବନଦାବୃତ ଶ୍ରାବଣ ଗଗନର ନବ ନବ ଶୋଭା ସମ୍ଭାର କିମ୍ବା ବୃଷ୍ଟିର କଳଧାରାର ମିଳିତ ମଧୁର ଛନ୍ଦ, ବର୍ଷାକାଳୀନ ନଦୀର ଗମ୍ଭୀର ଗର୍ଜ୍ଜନ, ପକ୍ଷୀ କଣ୍ଠର ସୁମଧୁର ଲଳିତ କୂଜନ, ଅସଂଖ୍ୟ ପୁଷ୍ପର ଶୋଭା ସମ୍ଭାର ଓ ସୁବାସ, ଶ୍ୟାମଳ ବନାନୀ, ଗିରି ନିର୍ଝର, ଶ୍ୟାମଶସ୍ୟାଚ୍ଛାଦିତ ଦୀର୍ଘ କେଦାର ଆଦି, ଶୁଭ୍ର ଜୋଛନା ପଲ୍ଲୀର ପର୍ଣ୍ଣ କୁଟୀରଠାରୁ ନଗରର ସୌଧମାଳା ସର୍ବତ୍ର ଶୋଭା ପରିବ୍ୟାପ୍ତ । ଏହି ଅପରୂପ ଛବି ସର୍ବଦା ଆମ ସମ୍ମୁଖରେ ବିରାଜିତ । କେବଳ ଦେଖିବାକୁ ଆଖି ଥିଲେ ହେଲା । ଆମର ନିତ୍ୟ ପରିଚିତ ସୂର୍ଯ୍ୟ ଉଦୟ ଓ ଅସ୍ତ କି ସୁନ୍ଦର ! ଆମ ଚତୁଃପାର୍ଶ୍ୱରେ କେବଳ ଚିର ସୁନ୍ଦର, ସରସ, ଶ୍ୟାମଳ ପ୍ରକୃତି ନୁହେଁ, ସଜୀବ ମାନବ-ଗୋଷ୍ଠୀ ମଧ୍ୟ ଅଛି । ଏହା ଏକ ଅବିଚ୍ଛେଦ୍ୟ ବସ୍ତୁ-ବ୍ୟାପୀ ସାମାଜିକତାର ସ୍ୱାଦକ । ସ୍ୱାର୍ଥ ନୁହେଁ ନିଃସ୍ୱାର୍ଥହିଁ ଆନନ୍ଦ । ସାମାଜିକତାର ମୂଳଭିତ୍ତି ଏହି ନିଃସ୍ୱାର୍ଥତା ।

ସେଥିପାଇଁ ଆମ୍ଭେମାନେ ପରମେଶ୍ୱରଙ୍କୁ ସ୍ନେହ ଶ୍ରଦ୍ଧା, ଭକ୍ତି, ପ୍ରୀତି ବନ୍ଧନରେ ବାନ୍ଧୁ । ଆନନ୍ଦ ଯେଉଁମାନେ ଅନୁଭବ କରିବାକୁ ଇଚ୍ଛାନ୍ତି ଅର୍ଥାତ୍ ଯେଉଁମାନେ ଆନନ୍ଦ ରାଜ୍ୟରେ ବାସ କରିବାକୁ ଇଚ୍ଛାନ୍ତି, ସେମାନଙ୍କର ପ୍ରଥମ ଦାୟିତ୍ୱ ହେଉଛି, ସୃଷ୍ଟିର ଏହି ଚିର ଆନନ୍ଦ ସ୍ୱରୂପର ସ୍ପଷ୍ଟ ଧାରଣା ମନରେ ଆଙ୍କିବା । ପରିବର୍ତ୍ତନ, ପରିବର୍ଦ୍ଧନ, ବିକାଶ, ବିନାଶ, ବିଦ୍ରୋହ ଓ ଶାନ୍ତି ମଧ୍ୟରେ ଯେଉଁମାନେ ସୃଷ୍ଟି ଲୀଳାର ଲାଳିତ୍ୟ ଧରି ପାରିଛନ୍ତି, ସେମାନେହିଁ ଆନନ୍ଦ ଅନୁଭବ କରିବାକୁ କ୍ଷମ । କଳା ଓ ସାହିତ୍ୟ ଏହି ଆନନ୍ଦ-ମଣିଷ ଜୀବନକୁ ଯୁଗ ଯୁଗ ମଧ୍ୟ ଦେଇ ଆସିଅଛି ।

କର୍ମ ଯୋଗୁଁ ମନୁଷ୍ୟର ମାନସିକ ଅବସ୍ଥାର ଗଠ । କର୍ମର ମନ ଉପରେ ପୁଣି ମନର କର୍ମ ଉପରେ ଏକ ତୀବ୍ର ପ୍ରଭାବ ଅଛି । ମୁଁ ଯଦି ସୁଚିନ୍ତା କରିବି, ମୋର କର୍ମ ମଙ୍ଗଳମୟ ହେବ । ଯଦି ମୋର ସୁକର୍ମ ଅଛି, ମୋର ମନ ଅନାବିଲ ରହିବ ।

ହିଁ, ପୁଣି ଆଉ ଟିକିଏ ଚିନ୍ତା କରିବାର ଅଛି । ଦୁଃଖ ଓ ନିରାନନ୍ଦ ପ୍ରାଣରେ କାହିଁକି ଉପୁଜେ ? ମନୁଷ୍ୟ ନାନା ବେଷ୍ଟନୀ ଦ୍ୱାରା ଆବଦ୍ଧ । ଆବେଷ୍ଟନୀ (Atmosphere )ର ଏକ ପ୍ରଭାବ ମାନବ ଚିତ୍ତ ଉପରେ ଅଛି । ଜଗତର ନାନା ଦୃଶ୍ୟ, ବନ୍ଧୁସ୍ୱଜନଙ୍କର ନାନା ଚିନ୍ତା, ସମାଜ, ଜାତି କିମ୍ବା ରାଷ୍ଟ୍ରର ନାନା ସଂଗ୍ରାମ, ସଂଘର୍ଷରେ ମନୁଷ୍ୟ ପ୍ରଭାବିତ ହେବାକୁ ବାଧ୍ୟ; କିନ୍ତୁ ପ୍ରଭାବିତ ହେବାରେ ଟିକିଏ ତୀକ୍ଷ୍ଣ ବିଚାରର ପ୍ରୟୋଜନ ଅଛି । ନୋହିଲେ ପ୍ରଭାବର ବିଷମ ବିପରୀତ ସମ୍ଭବପର । ମଦ୍ୟପର ପ୍ରଭାବରେ ମନୁଷ୍ୟ ମଦୁଆ ହେଲେ ଆନନ୍ଦ କିପରି ମିଳିବ ? ତେଣୁ ଦୁଃଖ, ନିରାନନ୍ଦ ମୂଳରେ ବିମୃଶ୍ୟହୀନତା ଓ ଅବିଦ୍ୟା ।

ମୋର ଏକମାତ୍ର ଶିଶୁ ପୁତ୍ର ମୃତ । ମୋର ପ୍ରିୟ ଭଗିନୀ ଏକ ଆରୋଗ୍ୟହୀନ ରୋଗ-ଶଯ୍ୟାରେ ଶାୟିତ, ତେବେ ମୁଁ ବ୍ୟଥିତ ହେବି ନା ନାହିଁ ? ଏହି ବ୍ୟଥା, ଏହି ଦୁଃଖ କଅଣ ଠିକ୍ ? ମନୁଷ୍ୟର ବେଦନା-ବୋଧ ବଡ଼ ଗଭୀର । ମନୁଷ୍ୟର ପ୍ରାଣ ପାଷାଣ ନୁହେଁ, କିନ୍ତୁ ଅନୁଭବ କରିବାରେ କିମ୍ବା ଏକଭାବରେ ବିହ୍ୱଳ ହେବା ପୂର୍ବରୁ ମନୁଷ୍ୟ ଟିକିଏ ବିଚାର ଖଟାଇ ପାରିଲେ ସେ ସହଜରେ ଦୁଃଖ, ନୈରାଶ୍ୟ, ଜଞ୍ଜାଳରୁ ତ୍ରାହି ପାଇପାରେ । ଅବଶ୍ୟ ଏହା ସଂଯମ ଓ ସାଧନାସାପେକ୍ଷ ।

ଜୀବନର ଅନନ୍ତ ବିକାଶ ସମ୍ଭବପର । ତେଣୁ ମନୁଷ୍ୟ ଜୀବନ ଦୁର୍ଲ୍ଲଭ । ଏହି ବିକାଶ ପାଇଁ କିନ୍ତୁ ବ୍ୟସ୍ତ ହେଲେ ଚଳିବ ନାହିଁ ।

ନଚିକେତାଙ୍କୁ ଯେତେବେଳେ ଯମ ଉତ୍ତର ଦେଲେ, 'ଦେହୀ ମରେ ନାହିଁ କି ଜନ୍ମ ହୁଏ ନାହିଁ,' ସେତେବେଳେ ନଚିକେତା ପ୍ରାଣରେ ଗଭୀର ଭାବରେ ପ୍ରଥମ ଥର ପାଇଁ ଉପଲବ୍ଧି କଲେ—ମୃତ୍ୟୁ ଲାଗି ଦୁଃଖ ମିଥ୍ୟା । ଯାହା ମିଥ୍ୟା ତାହାପାଇଁ ପୁଣି ଚିନ୍ତା କିଏ ? ଏହା ସ୍ଥିର ନାହିଁ, ସ୍ଥିରଂ ଯାତା ଧର୍ମ କଥା । ଭୂତଗଠିତ ଶରୀର କ୍ଷୟର ଅଧୀନ । ଏହାର ପରିବର୍ତ୍ତନ, ପରିବର୍ଦ୍ଧନ ଅବଶ୍ୟମ୍ଭାବୀ । ତେଣୁ ଶରୀର ନଷ୍ଟରେ ନିରାନନ୍ଦର କାରଣ ଅମୂଳକ । କୃଷ୍ଣା ଗୌତମୀ ତାହାଙ୍କର ଏକମାତ୍ର ପୁତ୍ରଙ୍କୁ ହରାଇ ଯେତେବେଳେ ପାଗଳୀ ପ୍ରାୟ ହୋଇ ବୁଦ୍ଧଙ୍କର ଶରଣାପନ୍ନ ହେଲେ, ସେତେବେଳେ ବୁଦ୍ଧ କହିଲେ, 'ହଁ, ମୁଁ ତୁମ୍ଭର ପୁତ୍ରଙ୍କୁ ବଞ୍ଚାଇ ଦେବି ।' କୃଷ୍ଣା ଗୌତମୀଙ୍କ ମୃତପ୍ରାୟ ପ୍ରାଣରେ ଅମୃତ-ଆଶା ସଞ୍ଚାରିତ ହେଲା । କିନ୍ତୁ ବୁଦ୍ଧ ପୁଣି କହିଲେ, 'ଯାଅ ମୁଠାଏ ସୋରିଷ ଆଣିବ, ଏମିତି ଏକ ଘରୁ, ଯାହାର କେହି ମରି ନଥିବେ ।' କୃଷ୍ଣା ଜଗତର ଏହି ଅତି ଦୈନନ୍ଦିନ ଘଟଣା ବି ଭୁଲିଯାଇଥିଲେ । ଅନେକ ସମୟରେ ସମସ୍ତେ ବି ଭୁଲନ୍ତି । ଜାଣି ଜାଣି ନିରର୍ଥକ ଅଶ୍ରୁ ଯେ ବହୁଥାଏ, ଏହା ପୃଥିବୀର ଅଜଣା ଘଟଣା ନୁହେଁ । କିନ୍ତୁ ଯେତେବେଳେ ରାଜଦୁଲଣୀ କୃଷ୍ଣା ସୋରିଷ ନ ପାଇ ସନ୍ଧ୍ୟାବେଳେ କ୍ଳାନ୍ତ, ଶ୍ରାନ୍ତ ହୋଇ ଏକ ପଥ ପାଖରେ ବସିପଡ଼ିଲେ, ତାହାଙ୍କର ଚେତନା ଉଦୟ ହେଲା । ସେ ବୁଝିଲେ, ତାହାଙ୍କର ପ୍ରିୟ ପୁତ୍ରର ମୃତ୍ୟୁରେ ଶୋକ ବୃଥା ।

ରାଜକନ୍ୟା କୃଷ୍ଣା ଗୌତମୀଙ୍କ ନିର୍ବୋଧତା ସାଧାରଣ ଜଗତରେ ଆଜିକାଲି ମଧ୍ୟ ଊଣା ପଡ଼ୁନାହିଁ । ଯେଉଁ ଘରେ ନିଆଁ ଲାଗିଲା ମନୁଷ୍ୟ ଭାବରେ ଆମର ପ୍ରଥମ କର୍ତ୍ତବ୍ୟ, ସେହି ଘରକୁ ପାଣି ସାହାଯ୍ୟରେ ଲିଭାଇବାକୁ ଚେଷ୍ଟା କରିବା । ପଡ଼ୋଶୀଜନଙ୍କୁ ସାହାଯ୍ୟ ପାଇଁ ହୁରି ଛାଡ଼ିବା । କର୍ମ ମନୁଷ୍ୟର । ହୁଏତ ମାନବିକ ଚେଷ୍ଟା ଫଳରେ ଘର ଅଗ୍ନିଦାହରୁ ରକ୍ଷା ପାଇପାରେ । ଯଦି ଗୃହ ଭସ୍ମସାତ୍ ହୁଏ, ତଥାପି ବଂଶୀ ନ ବଜାଇ କାନ୍ଦିବାରେ କି ଲାଭ ? ହୁଏତ ପୁଣି କର୍ମ କରି କାଠ, ଦଉଡ଼ି, ଛଣ, ମାଟି ସଂଗ୍ରହ କରି ନୂତନ ଗୃହ ନିର୍ମାଣ କରିବା ମନୁଷ୍ୟୋଚିତ । ଯଦି ବନ୍ଧୁ-ପରିଜନ ରୋଗଗ୍ରସ୍ତ ହେଲେ, ତେବେ ଡାକ୍ତର ବୈଦ୍ୟ ଡାକି ଚିକିତ୍ସାର ବନ୍ଦୋବସ୍ତ କରିବା ବା ନିଜେ ସେବା କରିବା ହିଁ ମନୁଷ୍ୟୋଚିତ ! ବୃଥା ମନସ୍ତାପ ଓ କ୍ରନ୍ଦନର କାରଣ କଅଣ ମୁଁ ବୁଝେ ନାହିଁ । ଏହା ମୋର ଅତି ବାସ୍ତବ-ଦର୍ଶନ (Practical Philosophy) । ଯାହା

ଅବାସ୍ତବ ତାହାକୁ ଆମ୍ଭେମାନେ ଅତି ମୋହଗ୍ରସ୍ତ ହୋଇ ନିଜର ଅନ୍ତର ପ୍ରଦେଶରେ ଧରୁ ବୋଲି ଆମର ବୃଥା ଶୋକ ଓ ଶୋଚନା ହୁଏ । ମୋହର କୁଠାର ବିଚାର ।

ଯେତେବେଳେ ମନୁଷ୍ୟ ଗଭୀର ଭାବରେ ବୁଝିବ ଯେ, ରାଜା, ପ୍ରଜା, ଧନୀ, ନିର୍ଦ୍ଧନ, ଦୁଃଖୀ ସୁଖୀ, ଗୁରୁ ଛାତ୍ର, ନର ଓ ନାରୀ ଏକ, 'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି', ଅର୍ଥାତ୍ ଏକ ସତ୍ୟକୁ ବିପ୍ରମାନେ ବହୁ ଭାବରେ କହନ୍ତି, ସେତେବେଳେ ଆଉ ହିଂସା, ଦ୍ୱେଷ, ପରଶ୍ରୀକାତରତା ପାଇଁ କ୍ଷୁଦ୍ର ଜୀବନରେ ଅବକାଶ କାହିଁ ? ଆମ୍ଭେମାନେ ଏହି ସତ୍ୟଟିକୁ ଭୁଲିଯାଉ । କ୍ଷୁଦ୍ର ସ୍ୱାର୍ଥରେ ଆମ୍ଭେମାନେ ଅନ୍ଧ ହେଉ । କିନ୍ତୁ ବୃହତ୍ ଚିନ୍ତାହିଁ ଆନନ୍ଦ । ଆମ୍ଭେମାନେ ଏକ ବିଶ୍ୱବ୍ୟାପୀ ବିରାଟ ଶକ୍ତିର ଅଚ୍ଛେଦ୍ୟ, ଅବିଭାଜ୍ୟ ଅଂଶ ହୋଇ ମଧ୍ୟ ସେ ବିଷୟରେ ଅଜ୍ଞ—ତେଣୁ ନିରାନନ୍ଦ । ଏହା ଭ୍ରମ । ହିଂସା, ଦ୍ୱେଷ, କୁକର୍ମ ବା କୁଚିନ୍ତାରୁ କେହି ଆନନ୍ଦ ପାଇ ନପାରେ । ମାନବ ଏକ ଶ୍ରେଷ୍ଠ ନୈତିକ ଜୀବ । ସୁକର୍ମ ଅନୁତାପହୀନ; ଅର୍ଥାତ୍ ପୁଣ୍ୟ । ଯେଉଁ କର୍ମ ଜୀବନରେ ଅନୁତାପ ଆଣେ, ତାହା ମନ୍ଦକର୍ମ ବା ପାପ । ଏହାର ଫଳ ଦୁଃଖ । କର୍ମର ମୂଲ୍ୟ ନିରୂପଣହିଁ ନୈତିକତାର ଲକ୍ଷଣ । କୁଚିନ୍ତା ଯୋଗୁଁ ଆମ୍ଭମାନଙ୍କର ଦୁଃଖ । ସତ୍ୟ ନ ବୁଝିବାଯାଏ ଦୁଃଖ, ଆଲୁଅର ସନ୍ଧାନ ନ ମିଳିବା ଯାଏ ଅନ୍ଧାର । କିନ୍ତୁ ଥରେ ସୃଷ୍ଟିର ସତ୍ୟ-ଧାରଣା ସୁସ୍ପଷ୍ଟ ଭାବରେ ଚିନ୍ତିବା ଗଭୀର ଭାବରେ ଉପଲବ୍ଧି କରି ପାରିଲେ ଓ କର୍ମ ଦର୍ଶନର ସୂକ୍ଷ୍ମ ମୂଳ ବୁଝି ପାରିଲେ ଆଉ ଦୁଃଖ, ନୈରାଶ୍ୟ କାହିଁ ? ଆଉ ନିରାନନ୍ଦ କାହିଁ ? ସେଥିପାଇଁ ମୁଁ ବିରହରେ ବ୍ୟସ୍ତ, ବିଚ୍ଛେଦରେ ବ୍ୟଥିତ, ବାଧା ବିଘ୍ନରେ ବିଚଳିତ କିମ୍ବା ମୃତ୍ୟୁରେ ମର୍ମାହତ ହେବାର କୌଣସି କାରଣ ଦେଖେ ନାହିଁ । କିନ୍ତୁ ମୋହର ପ୍ରାଣଟା ପଥର ନୁହେଁ । ହୁଏତ ମୋ ଶରୀରରେ ବିଶ୍ୱ ଲାଗି ପ୍ରଚୁର ପ୍ରୀତି ଓ ଶୁଭ ସ୍ପନ୍ଦନ ପୂରି ରହିଅଛି ।

ପୁଣି ଏ ସ୍ଥଳରେ ଅନ୍ୟ ଏକ ପ୍ରଶ୍ନ ଉଠିବା ସମ୍ଭବପର । ବ୍ୟକ୍ତିଗତ, ଅର୍ଥନୀତିକ ସମସ୍ୟା ହେତୁ ମାନବର ମାନସିକ ଅବସ୍ଥା କଅଣ ହେବ ? ସମାଜରେ ହୁଏତ କେହି ଦୁଗ୍ଧଫେନନିଭ ଶଯ୍ୟାରେ ଶାୟିତ, କେହି ଛିଣ୍ଡା କେନ୍ଥା ପିନ୍ଧୁଛନ୍ତି । ଉପାୟ କଅଣ ? ମୁଁ ପ୍ରଥମରୁ କହିଛି—ସେହି କର୍ମ, କ୍ରନ୍ଦନ ନୁହେଁ । ବିକାଶ, ବିଦ୍ରୋହ ଯାହା ଆସୁ ତାହା ମୂଳରେ କର୍ମ । କର୍ମ ଅମର । ମୁଁ ଦରିଦ୍ର । କାନ୍ଦି କିମ୍ବା ଧୂଳିରେ ମୁଣ୍ଡ ବାଡେଇ ମୋର ଅବସ୍ଥାର ପରିବର୍ତ୍ତନ ହେବ ନାହିଁ । ମୋର ଅବସ୍ଥାର ପରିବର୍ତ୍ତନ ହେବ

ମୋ ନିଜର ବା ସମଷ୍ଟିଗତ କର୍ମ ବଳରେ; ତେଣୁ ଦୁଃଖ ପାଇଁ ଜୀବନରେ ଆଉ ସ୍ଥାନ କାହିଁ ? ଏଥିରୁ କେହି ଭାବନ୍ତୁ ନାହିଁ ଯେ, ମନୁଷ୍ୟ ଏକ ପ୍ରସ୍ତର ନିର୍ମିତ ଅନ୍ତର ନେଇ ଦୁନିଆରେ ବସବାସ କରିବ । ନା—ବରଂ ମୁଁ କହୁଛି ଯେ ପ୍ରାଣକୁ ସ୍ୱତନ୍ତ୍ରା, ସ୍ୱଚ୍ଛନ୍ଦ ଓ ସୁଉଲ୍ଲାସରେ ପରିପୂର୍ଣ୍ଣ କର । ହିଂସା ନୁହେଁ ପ୍ରେମ, କ୍ଷୁଦ୍ର ସ୍ୱାର୍ଥ ନୁହେଁ ନିଃସ୍ୱାର୍ଥ, ଅସତ୍ୟ ନୁହେଁ ସତ୍ୟ, ଅଧର୍ମ ନୁହେଁ ଧର୍ମ, ଆଳସ୍ୟ ନୁହେଁ ସୁକର୍ମ, ନିଶ୍ଚେଷ୍ଟତା ନୁହେଁ ଉଦ୍ୟମ ଆମକୁ ଆନନ୍ଦର ସମ୍ମୁଖୀନ କରିବ । ବୃହତ୍ତର ବନ୍ଧୁ-ବୋଧ ଆମକୁ ବିରହ, ବିଚ୍ଛେଦ, ବ୍ୟାଧି, ଜରା, ମୃତ୍ୟୁର ଭ୍ରମ-ଚକ୍ରାନ୍ତରୁ ପରିତ୍ରାଣ କରିବ । ବାହାରର ପରିବର୍ତ୍ତନରେ ଅନ୍ତର-ମାନବ ପ୍ରଭାବିତ ହେବା ଅନୁଚିତ । ତଥାପି ପ୍ରତ୍ୟେକ ମନୁଷ୍ୟର ଜାଣି ରଖିବା ଉଚିତ ଯେ, ଜୀବନ ଏକ ସଳଖ ବାଟ ନୁହେଁ । ତାହା ସଂଘର୍ଷ ଓ ସଂଗ୍ରାମର କ୍ଷେତ୍ର । ବାଧାବିଘ୍ନ ଆସିବ । ଏଥିରେ ମନ ସ୍ୱଭାବତଃ ବିଚଳିତ ହେବା ସମ୍ଭବପର; କିନ୍ତୁ ବାଧା ବିଘ୍ନରେ ଯାହାର ମନ ବିଚଳିତ ନ ହେବ, ଯେ ସକଳ ଦୁଃଖ, ଦୈନ୍ୟ, [illegible] ମଧ୍ୟରେ ମନକୁ ସ୍ଥିର ରଖି ଲକ୍ଷ୍ୟ ପ୍ରାପ୍ତି ଲାଗି କର୍ମ କରି ପାରିବ, ସେହିହିଁ ଜୀବନଯାତ୍ରାରେ ଜୟୀ ବା ପ୍ରକୃତ ବୀର । ତାଙ୍କର ଜୟଗାଥାହିଁ ଆମ ବୀର-ଜୀବନର ସ୍ପୃହା ପୂରଣ କରିବ ।

ଠିକ୍ ଏ ଚେଷ୍ଟା, ଠିକ୍ ଏ ସାଧନା କଲେ ମନୁଷ୍ୟ ଏହି ଅଖଣ୍ଡ ଆନନ୍ଦ ବୋଧ ନିଜ ଅନ୍ତରରେ ଲାଭ କରି ପାରିବ । ଜୀବନ ଏକ କୌଶଳ । ଯେ ଉପଯୁକ୍ତ କୌଶଳୀ, ସେହିହିଁ ଜୀବନ ପଥର ଆନନ୍ଦ-ଧ୍ୱନି ଶ୍ରବଣରେ ସର୍ବଦା ମଗ୍ନ । ତାହାର ସମ୍ମୁଖରେହିଁ ଜୀବନ ଉତ୍ସବର ସାର୍ଥକତା ।

ପୁଣି ଏକ କଥା—ଯେଉଁମାନେ ନିୟମ ଲଙ୍ଘନ କରିବେ, ଅର୍ଥାତ୍ ଯେଉଁମାନେ ଦୋଷୀ, ସେମାନେ କଅଣ ମାନସିକ ଆନନ୍ଦ ପରିପାଳନ କରିବା ସମ୍ଭବପର ? ହଁ, ମୋ ବଗୁରରେ ଭଙ୍ଗା ପାଣି ମାଠିଆ ପାଇଁ ଶୋଚନା ବୃଥା । ଯଦି ମୁଁ ନିୟମ ଲଙ୍ଘନ କଲି, ତେବେ ତ ମୋତେ କର୍ମର ନିୟମାନୁଯାୟୀ ମୋ କୃତ କର୍ମର ଫଳ ଭୋଗ କରିବାକୁ ହେବ । ତହିଁରୁ ମୋତେ କିଏ ରକ୍ଷା କରିବ ? କେବଳ ପ୍ରକୃତ ସୁକର୍ମ ଦ୍ୱାରା ପୁଣି ମୋର ପରିତ୍ରାଣ ସମ୍ଭବପର । ତେଣୁ ହତାଶ, ଦୁଃଖ, ନୈରାଶ୍ୟ ସଂସାରରେ ବୃଥା । ମୁଁ ଅସୀମ ଆଶାବାଦୀ ।

ବେଦନାର ପୁଣି ଏକ ଆନନ୍ଦ ଅଛି । 'କରୁଣା'କୁ ଆମ୍ଭେମାନେ ବାଦ୍ ଦେଇ ପାରିବା ନାହିଁ । 'କରୁଣା' ଓ 'ଦୁଃଖ'ର ପାର୍ଥକ୍ୟ ବୁଝିବା ଦରକାର । କେତେକ ଦୃଷ୍ଟାନ୍ତ ଦେଖାଯାଉ । ଧ୍ରୁବ, ପ୍ରହ୍ଲାଦ ନାଟକରେ ଧ୍ରୁବର ବନଗମନ ବେଳେ, ପ୍ରହ୍ଲାଦର ସକଳ ଯନ୍ତ୍ରଣା ଭୋଗବେଳେ ମନୁଷ୍ୟର ଆଖିରୁ ଲୁହ ବହେ; ତଥାପି ମଣିଷ ସେହି ଦୃଶ୍ୟ ରଙ୍ଗମଞ୍ଚରେ ବସି ବସି ଦେଖେ, କାହିଁକି ? କାରଣ ମନୁଷ୍ୟ ତାର ଗଭୀର ଅନ୍ତରରେ ଆନନ୍ଦ ପାଉଥାଏ ଏହି ବେଦନାରୁ । ମନୁଷ୍ୟ ଏକ ଗଭୀର ଅନୁଭୂତିମୂଳକ ଜୀବ । ଆମ୍ଭେମାନେ ଅନୁଭୂତିକୁ ବାଦ ଦେଇ ପାରିବା ନାହିଁ । ଯେତେବେଳେ ଜଣେ ଜୀବନ୍ମୁକ୍ତ ସନ୍ନ୍ୟାସୀ ଏକ ଦରିଦ୍ର ଭିକ୍ଷୁର ଲଞ୍ଛନା, କଷଣ ଦେଖନ୍ତି; ତାଙ୍କ ପ୍ରାଣ କରୁଣାରେ ବିଗଳିତ ହୁଏ । ମାତାର ହୃଦୟ ଭଳି ପରୋପକାର ଲାଗି ଅନେକଙ୍କ ଚିତ୍ତରେ କରୁଣା ଉଦ୍ରେକ ହୁଏ । କିନ୍ତୁ କରୁଣା ଓ ଦୁଃଖ ଏକ କଥା ନୁହେ । ଏହି କରୁଣାବୋଧ ଆମକୁ ସୃଷ୍ଟି ଲାଗି କର୍ମ କରିବାକୁ ସତ୍ ପ୍ରେରଣା ଦିଏ ।

ତାହା ହୋଇ ନ ଥିଲେ ବୁଦ୍ଧ, ଶଙ୍କର କିମ୍ବା ଖ୍ରୀଷ୍ଟ ଧର୍ମପ୍ରଚାର କରି ନ ଥାନ୍ତେ । ସେମାନଙ୍କର ବ୍ୟକ୍ତିଗତ ଦୁଃଖ ନ ଥିଲା । ବୁଦ୍ଧ କହୁଥିଲେ—'ସୃଷ୍ଟିରେ ଜଣେ ବ୍ୟକ୍ତି ନିର୍ବାଣ ନ ପାଇବାଯାଏ ସେ ପୁଣି ଆସୁଥିବେ ସଂସାରକୁ 'ଅଷ୍ଟପଥ'ର ଆଲୋକ ଦେବା ଲାଗି ।'

ତେଣୁ କରୁଣାର ପିଣ୍ଡ ବିଶ୍ୱ ଲାଗି ଗଭୀର ସହାନୁଭୂତି ବୋଧରେ । ସମାଜରେ ଆମ୍ଭେମାନେ ଯେଉଁ ତ୍ୟାଗୀ, କର୍ମବୀର, ଧର୍ମବୀର ଦେଖୁଁ; ସେମାନଙ୍କ ଜୀବନ-ପ୍ରେରଣାର ମୂଳ ଉତ୍ସ ଏହି ଗଭୀର ବିଶ୍ୱପ୍ରୀତିରେ । ବିଶ୍ୱର ପରିତ୍ରାଣ ଓ ମଙ୍ଗଳ ଲାଗି ସେମାନେ ସତତ ବ୍ୟସ୍ତ, କର୍ମଯୁକ୍ତ । କିନ୍ତୁ ସେମାନଙ୍କର କର୍ମ ଲୋଡ଼ା ନାହିଁ, ସେମାନଙ୍କର ଅଭାବ, ଅସୁବିଧା କିଛି ନାହିଁ ; ସେମାନେ ନିଷ୍କାମକର୍ମୀ ।

ଜୀବନର ଏହି ପ୍ରକୃତ ମୂଲ୍ୟ ଏବଂ ସ୍ୱରୂପ ବୁଝିଲେ ଓ ଜୀବନ ଯାପନର ଏହି ସୂକ୍ଷ୍ମକୌଶଳ ଅବଗତ ହେଲେ, ମନୁଷ୍ୟ ଆଉ ନିରାନନ୍ଦରେ ରହି ପାରିବ ନାହିଁ । ସେତେବେଳେ ସେ ହୁଏତ ତମ ସାଙ୍ଗରେ କଣ୍ଠ ମିଳାଇ ଗାଇବ—

"ଆନନ୍ଦୁ ଜନମ, ଆନନ୍ଦେ ମୋ ସ୍ଥିତି
ଅଖଣ୍ଡ ଆନନ୍ଦେ ମୋର ମରଣ ।"

ଏହି ସୁବାଣୀର ସ୍ପନ୍ଦନ ଆଜି କୋଟି କଣ୍ଠରେ ଝଙ୍କୃତ ହେବାର ସମୟ ଆସିଅଛି । ଯେଉଁ ସ୍ପନ୍ଦନ, ସ୍ୱପ୍ନ ଅସଂଖ୍ୟ ଅନ୍ତର ତଳେ ସ୍ପନ୍ଦିତ, ତାହାର ଏକଟୁଁସ ସୂତ୍ର ମାତ୍ର ମୁଁ ଏଠାରେ ଦେଲି । ଏହା କୌଣସି ଜୀବନରେ ପ୍ରତିପାଳିତ ହୋଇ ପାରିଲେ କିମ୍ବା ଏହି ଆଦର୍ଶରେ କାହାର ଜୀବନ ଗଠିତ ହୋଇ ପାରିଲେ, ଆନନ୍ଦଭିକ୍ଷୁ କବିର ଏହି ଶ୍ରମ ଯେ ସାର୍ଥକତା ଲାଭ କରିବ, ତାହା ଏଠାରେ କହିବା ବୋଧହୁଏ ଅସମୀଚୀନ ହେବ ନାହିଁ ।

ଅଦ୍ୱୈତବାଦୀ ହୁଅନ୍ତୁ କିମ୍ବା ଦ୍ୱୈତବାଦୀ ହୁଅନ୍ତୁ, ବୈଷ୍ଣବ ହୁଅନ୍ତୁ ବା ଶାକ୍ତ, ଶୈବ ହୁଅନ୍ତୁ; ଜାତି ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏହି ମହନୀୟ ଆଦର୍ଶ ଓ ଶୁଭ ପ୍ରେରଣାରେ ବିଶ୍ୱ-ମାନବ ସ୍ପନ୍ଦିତ ହେଉ ଏବଂ ତାହାର ଜୀବନଗୃହ ଏହି ଅଖଣ୍ଡ ଆନନ୍ଦ ଭୂମି ଉପରେ ଗଢ଼ାଯାଉ, ଏହାହିଁ ମୋର ଶୁଭ କାମନା । ଏହି ଅମୃତ ଆନନ୍ଦବାଣୀ ପ୍ରଚାରରେ ବିଶ୍ୱର ସକଳ ଅଁତି ଅନ୍ତରରେ ଯଦି ମୁଁ କିଛି ଆଶା, ଆନନ୍ଦବାଣୀ ସଞ୍ଚାର କରିପାରେଁ, ତାହାହିଁ ମୋ ଭଳି କ୍ଷୁଦ୍ର ପକ୍ଷରେ ଯଥେଷ୍ଟ ।



# ରହସ୍ୟବାଦ

ସାଧାରଣ ମନୁଷ୍ୟ ଆଗରେ ସ୍ଥୂଳଟା ବଡ଼ ହୋଇ ଦେଖାଯାଏ । ମଣିଷର ଦେହକୁ ଅନାଇଲେ ହାତ, ଗୋଡ଼, ବଳିଷ୍ଠ ବାହୁ ପ୍ରଭୃତି ହଠାତ୍ ଆଖିରେ ପଡ଼େ, କିମ୍ବା ସୁନ୍ଦର ରୂପବତୀ ନାରୀର ସୁଗଠିତ ଅବୟବ ଉପରେ ଆଖି ଲାଗିଯାଏ । ଏହି ହାଡ଼, ମାଂସ, ମାଂସପେଶୀ ବା ଆରକ୍ତ ଅଧର, ଗଣ୍ଡଯୁଗଲ, କୃଷ୍ଣ କଳାବେଣୀ ମଣିଷ ଦେହର ସ୍ଥୂଳ ଅଂଶ । କିନ୍ତୁ ଡାକ୍ତର କିମ୍ବା ବିଜ୍ଞ ଲୋକେ ଜାଣନ୍ତି ଯେ ପହିଲମାନର ଗଦା ଭଳି ବାହୁ, ଫୁଟ୍‌ବଲ୍ ଖେଳାଳୀର ଲୁହା ଭଳି ଶକ୍ତ ଗୋଡ଼ଭଣ୍ଡା, କିମ୍ବା ରୂପବତୀ ନାରୀର କମନୀୟ ଅଙ୍ଗପ୍ରତ୍ୟଙ୍ଗ ପଛରେ ଆଉ କେତେଗୁଡ଼ିଏ ସୂକ୍ଷ୍ମ ପଦାର୍ଥ ଅଛି । ତାହାହିଁ ସ୍ନାୟୁ । ସ୍ନାୟୁ ହିଁ ଏକଦେହଗଣ୍ଡୁ ମୂଳ । ଏହାଠାରୁ ଅଧିକ ସୂକ୍ଷ୍ମତତ୍ତ୍ୱ ମଣିଷ ଦେହରେ ଅଛି । ତଥାପି ଏହି ସ୍ନାୟୁ ନ ଥିଲେ ମଣିଷ ମାଂସପେଶୀରେ ବଳ ଥାଆନ୍ତା ନାହିଁ କିମ୍ବା ମଣିଷ ଅଙ୍ଗର ସୁନ୍ଦର ଗଠନ ନୟନ ଓ ମନ ଆକର୍ଷଣ କରନ୍ତା ନାହିଁ ।

ଅନେକ ସମୟରେ ଏହି ସୁନ୍ଦର, ସୂକ୍ଷ୍ମ ଓ ମଣିଷ ଦେହର ଶ୍ରେଷ୍ଠ ଅଂଶ ସ୍ନାୟୁ (ଶ୍ରେଷ୍ଠତମ ନୁହେଁ) ର ଖବର ସାଧାରଣ ମଣିଷ ବୁଝେ ନାହିଁ । କିମ୍ବା ବୁଝି ମଧ୍ୟ ସ୍ନାୟୁର ଜନ୍ମ ନେବାକୁ ଭୁଲିଯାଏ । ଧରନ୍ତୁ ଗୋଟିଏ ସୈନିକର ହାତଟିଏ କିମ୍ବା ଗୋଟିଏ ଫୁଟ୍-ବୁଲର ଗୋଡ଼ଟିଏ କଟିଗଲେ, ସେ ପୁଣି ବଞ୍ଚେ, କିନ୍ତୁ ମେରୁଦଣ୍ଡ ମଧ୍ୟସ୍ଥ ସ୍ନାୟୁଗୁଚ୍ଛ କୌଣସି କାରଣରୁ ଛିଡ଼ିଗଲେ ମଣିଷ ଆଉ ବଞ୍ଚିପାରେ ନାହିଁ । ଏହା ଗୋଟିଏ ଅତି ସାଧାରଣ ଉଦାହରଣ । ମଣିଷ ଜଗତର ଏହି ସ୍ଥୂଳ ରୂପ ଦେଖି ସନ୍ତୁଷ୍ଟ ହୋଇ ରହି ପାରି ନାହିଁ । ଭାବୁକ ମନରେ ସ୍ୱତଃ ପ୍ରଶ୍ନ ଉଠେଛି ଯେ ଏହି ସ୍ଥୂଳ ରୂପ କ'ଣ ସତ୍ୟ ? ଜଗତର ଏହି ପରିବର୍ତ୍ତନଶୀଳ, କ୍ଷୟଶୀଳ, ନାମ-ରୂପ ଜଗତ ପଛରେ କୌଣସି ଅପରିବର୍ତ୍ତନୀୟ ଅକ୍ଷୟ, ଅନନ୍ତ ସୂକ୍ଷ୍ମ ଶକ୍ତି ଅଛି କି ?

ଏହି ଚିନ୍ତାରୁ ଚିନ୍ତା-ରାଜ୍ୟରେ ଏକ ମହା ଆନ୍ଦୋଳନ ଆସି ଉପସ୍ଥିତ ହୋଇଅଛି । କେବଳ କବି, ଭାବୁକ, ଦାର୍ଶନିକ ଯେ ଏହି ସ୍ଥୂଳ ନାମ-ରୂପ ଜଗତ ପଛରେ ସୂକ୍ଷ୍ମର ସତ୍ତା ଖୋଜି ବୁଲୁଛନ୍ତି, ତାହା ନୁହେଁ, ଅତି ଜଡ଼ବାଦୀ ବୈଜ୍ଞାନିକ ମଧ୍ୟ । ଅକ ବିଂଶ ଶତାବ୍ଦୀର ହେତୁବାଦୀ ବୈଜ୍ଞାନିକ କେବଳ ବସ୍ତୁରେ ତାର ଦୃଷ୍ଟି ଅବଦ୍ଧ କରିନାହାନ୍ତି । ଇଲେକ୍‌ଟ୍ରନ ଯାଏ ତାର ଗତି ହୋଇଅଛି । ସେହିପରି ଦାର୍ଶନିକଗଣ କେବଳ ଏହି ପ୍ରକୃତିରେ ଦୃଷ୍ଟି ଅବଦ୍ଧ ନ କରି 'ବ୍ରହ୍ମ' ଯାଏ ତାଙ୍କର ଭାବଧାରା ବୁହାଇ ପାରିଅଛନ୍ତି । ବ୍ରହ୍ମ

ନାଁ ଦିଆରେ ସେଇତ ଯାଏ ଆସେ ନାହିଁ । ଏକ, ଦୁଇ, ରାମ, ଶ୍ୟାମ ପ୍ରଭୃତି ଏହା ଏକ ମନୁଷ୍ୟ ଦ୍ୱାରା ଆରୋପିତ ନାମ ମାତ୍ର । ତ୍ରିତ୍ତ୍ୱ ବିଶ୍ୱାସ ସତ୍ୟ କି ଇଲେକ୍ଟ୍ରନ ବିଶ୍ୱାସ ସତ୍ୟ, ତାହାର ପରୀକ୍ଷା ପାଇଁ ଏହି ବିଜ୍ଞାନ-ଯୁଗରେ ସତ୍ୟାର୍ଥୀ ବୈଜ୍ଞାନିକଗଣ ପରୀକ୍ଷାଗାରରେ ଉପଯୁକ୍ତ ପରୀକ୍ଷା କରି ପାରନ୍ତି । ସମସ୍ତେ କିନ୍ତୁ ବୈଜ୍ଞାନିକ ହୁଅନ୍ତି ନାହିଁ । ଅନ୍ୟ ସାଧାରଣ ବ୍ୟକ୍ତି ବୈଜ୍ଞାନିକଙ୍କ ଉପଲବ୍ଧ ସତ୍ୟକୁ ନତ ମସ୍ତକରେ ମାନି ନିଅନ୍ତି । ଏହାହିଁ 'ଆଗମ' । ଯେଉଁମାନଙ୍କର 'ଆଗମ'ରେ ସନ୍ଦେହ ହେବ, ସେମାନେ ନିଜେ ବିଜ୍ଞାନ ବହି ପଢ଼ି ପରୀକ୍ଷା ପାଇଁ ଉପକରଣ ସଂଗ୍ରହ କରି ଅବା ଉପଯୁକ୍ତ ମାନସିକ ଅବସ୍ଥା ସୃଷ୍ଟି କରି ପ୍ରଜ୍ଞାମୂଳକ ସତ୍ୟ ଉପଲବ୍ଧି ପାଇଁ ପରୀକ୍ଷା ଆରମ୍ଭ କରି ପାରନ୍ତି । କିନ୍ତୁ ଏହି ସ୍ଥୂଳ ପଛରେ ସୂକ୍ଷ୍ମର ସନ୍ଧାନରେ ଗୋଟିଏ ବାଦ ପ୍ରକାଶ ପାଇଅଛି । ତାହା ରହସ୍ୟବାଦ ।

ମନୁଷ୍ୟ ସୃଷ୍ଟିପ୍ରକ୍ରିୟାର ଅତି ସରଳ, ସହଜ ପ୍ରକାଶ ଦେଖି ଦେଖି ସୃଷ୍ଟିରହସ୍ୟ ବୁଝିବାକୁ ଚେଷ୍ଟା କରିଅଛି ଏବଂ ନିଜେ ସେହି ରହସ୍ୟର ଫାନ୍ଦରେ ପଡ଼ି ଯାଇଅଛି । ରହସ୍ୟ-ଦର୍ଶିଙ୍କ ରହସ୍ୟତତ୍ତ୍ୱ ବୁଝୁଁ ବୁଝୁଁ ରହସ୍ୟ-ବାଦୀ ହୋଇ ପଡ଼ିଅଛି । ରହସ୍ୟବାଦକୁ ସେ ଏଡ଼ାଇ ପାରେ ନାହିଁ । ଫୁଲ ଫୁଟେ, ପକ୍ଷୀ ଉଡ଼େ, ସୂର୍ଯ୍ୟ ବୁଡ଼େ, ଚନ୍ଦ୍ର ଜ୍ୟୋତ୍ସ୍ନା ଢାଳେ, ନୀଳ ଆକାଶ ହସେ, ଶିଶୁ ଖେଳେ, ପ୍ରେମିକାର ପ୍ରାଣ ପ୍ରେମରେ ପୂର୍ଣ୍ଣ ହୁଏ, ପିତାମାତାଙ୍କ ହୃଦୟ ବାତ୍ସଲ୍ୟ-ଅମୃତରେ ଉଚ୍ଛୁଳି ଉଠେ । ଏହି ସମସ୍ତ ପ୍ରାକୃତିକ ବା ଜାଗତିକ ଦୃଶ୍ୟ ଦେଖୁ ଦେଖୁ ଦ୍ରଷ୍ଟା ଗଭୀର ଚିନ୍ତାମଗ୍ନ ହୁଏ । ସୃଷ୍ଟି-ରହସ୍ୟ ତା ପ୍ରାଣରେ ଗଭୀର ହୋଇ ଉଠେ । ଏହା ଏକ ଅତି ଜଣାଶୁଣା ଅନୁଭୂତି । ମନୁଷ୍ୟ ଭ୍ରମଣ ସମୟରେ ଯାଉଁ ଯାଉଁ କୌଣସି ଅତି ସାମାନ୍ୟ ଘଟଣା ଦେଖି ଦେଖି ସୃଷ୍ଟିର ସମ୍ୟକ୍ ଚିନ୍ତାରେ ଭାସି ଯାଏ । କ୍ଷଣିକ କେବଳ କ୍ଷଣିକ ହୋଇ ରହେ ନାହିଁ । କ୍ଷଣିକ ଅନନ୍ତ ସହିତ ସଂପୃକ୍ତ । କ୍ଷଣିକକୁ ଛାଡ଼ି ଅନନ୍ତ ପରିକଳ୍ପନା ସମ୍ଭବ ନୁହେଁ । କିନ୍ତୁ କ୍ଷଣିକ ମଧ୍ୟରେ ଅନନ୍ତକୁ ଉପଲବ୍ଧି କରିବାର ଦୃଷ୍ଟି ଥିବା ଲୋକଙ୍କ, ଏହି ଦୃଷ୍ଟି ଅତି ପ୍ରୀତିପ୍ରଦ । କ୍ଷୁଦ୍ର ବୃହତ୍ ବା ବିରାଟ ସ୍ପନ୍ଦନରେ ସ୍ପନ୍ଦିତ ହୋଇ ଉଠେ । ଏହି ସମସ୍ତ ଘଟଣାରୁ ପାଠକ-ପାଠିକାମାନେ ସହଜରେ ଭାବି ପାରିବେ ଯେ ରହସ୍ୟବାଦର ସୂତ୍ରପାତ କିପରି ହୋଇଅଛି ।

କିନ୍ତୁ ରହସ୍ୟବାଦରେ ଗୋଟିଏ ବଡ଼ ଭାବର ଖେଳ ହୁଏ । ତାହା ଆତ୍ମା ଓ ପରମାତ୍ମା ମଧ୍ୟରେ ଖେଳ । ଆତ୍ମା ପରମାତ୍ମା ଯୋଡ଼ିଏ ଅତି ପ୍ରାଚୀନ

ଯେଉଁ ଶ୍ରେଣୀ ହେତୁବାଦୀ ଓ ବସ୍ତୁବାଦୀମାନେ ଦେଖି ନ ପଡ଼ିବା ଉଚିତ। କାରଣ ଅନେକ ସମୟରେ ମନୁଷ୍ୟ ଭାବେ ଯେ ଗୋଟିଏ ବସ୍ତୁ ନୂଆ କରି କହିଲେ ସମସ୍ତେ 'ବାହା ବାହା' କହିବେ । ପୃଥିବୀଟା ବଡ଼ ପ୍ରାଚୀନ ଓ ଭାବ-ରାଜ୍ୟରେ ନୂତନତା ଅତି କମ୍ ! ଅବଶ୍ୟ ଏହା ସଙ୍ଗେ ସଙ୍ଗେ ସ୍ୱୀକାର କରାଯାଇପାରେ ଯେ ସତ୍ୟ, ବ୍ୟକ୍ତିତ୍ୱ ନେଇ ଯୁଗଧର୍ମ-ସ୍ତରରେ ନାନା ଭାବରେ ବ୍ୟକ୍ତ ହୁଏ । କିନ୍ତୁ ସତ୍ୟ ଏକ ଏବଂ ଯୁଗହୀନ ।

ମନୁଷ୍ୟ ଗୋଟିଏ ଦିଗରୁ ଏକ ଅତି ସୀମାବଦ୍ଧ ପ୍ରାଣୀ । କିନ୍ତୁ ତାହା ମଧ୍ୟରେ ଯେ ଅସୀମର ଏକ ଖେଳ ହେଉଅଛି ଏବଂ ମନୁଷ୍ୟ ଜୀବନରେ ଯେ ଅସୀମ କୋଣ ସମ୍ଭବପର, ଏ ବିଷୟରେ ପ୍ରତ୍ୟେକ ଭାବୁକର ସ୍ପଷ୍ଟ ଧାରଣା ପ୍ରଥମରୁ ଥିବା ଲୋଡ଼ା । ସୀମା ଅସୀମ ହେବାକୁ ବ୍ୟଗ୍ର । ଏହି ଖେଳରୁ ରହସ୍ୟବାଦର ଉତ୍ପତ୍ତି ।

ସୃଷ୍ଟି ପ୍ରକ୍ରିୟାରେ ମୁଁ ଯେଉଁ କ୍ଷଣିକ ବିଭବ କଥା କହୁଥିଲି, ସେହି ବିଭବ ଦେଖି ଦେଖି ମନୁଷ୍ୟ ପ୍ରାଣ ଏକ ବିରାଟ, ଅନନ୍ତ ସତ୍ତା ଅଭିମୁଖୀ ହୁଏ । ଏହି ରହସ୍ୟବାଦର ପ୍ରଥମ ସୂତ୍ରପାତ ତେଣୁ ବିରହରେ । ମାନବର ଅନ୍ତର ଆତ୍ମା ବିଶ୍ୱବ୍ୟାପୀ ବିରାଟଆତ୍ମା ବା ପରମାତ୍ମାର ସନ୍ଧାନରେ ଯାତ୍ରୀ ହୁଏ । ତେଣୁ ପ୍ରଥମେ ରହସ୍ୟବାଦୀ-ଜୀବନର ବିକାଶ ହୁଏ ବିରହରେ । ବିଶ୍ୱର ବିକାଶ ମଧ୍ୟ ବିରହରେ ଏବଂ ସେଥିପାଇଁ ରହସ୍ୟବାଦୀ ଅନନ୍ତ ସତ୍ତା ସନ୍ଧାନରେ ନାନା ପଥ ଦେଇ ଅଭିଯାନ କରେ ।

ନିର୍ଝରର ଝରଝର ସଙ୍ଗୀତ, ପକ୍ଷୀର କୂଜନ, ଶିଶୁର କ୍ରନ୍ଦନ ଶୁଣି ଶୁଣି କିମ୍ବା ଅନନ୍ତ ଗମ୍ଭୀର ନୀଳସିନ୍ଧୁ, ଅମ୍ବରଚୁମ୍ବୀ ସୁନୀଳ ଗିରିଚୂଡ଼ା ଦେଖି ଦେଖି ସେ ଭାବେ—ଏହାରି ମଧ୍ୟରେ ଅନନ୍ତ ସତ୍ତା ପ୍ରକାଶ ପାଉଛି ପରା ! ଧୂଳିର ଫୁଲ ପାଖୁଡ଼ାରେ, ଯୁବତୀର ଆରକ୍ତ ଅଧରରେ, ଶ୍ରାବଣ ବର୍ଷାର ଉଜ୍ଜ୍ୱଳ ଘନଗର୍ଜ୍ଜନରେ କିମ୍ବା ବୈଶାଖ ମଧ୍ୟାହ୍ନ ଝଡ଼ର ଧୂଳିକଣା ମଧ୍ୟରେ ସେହି ଦିବ୍ୟ-ପ୍ରକାଶ ହେଉଛି ପରା ! କେବଳ ବାହାର ପ୍ରକୃତି ନୁହେଁ, ମାନବର ଗଭୀର ଅନ୍ତରରେ ମଧ୍ୟ ତାଙ୍କର ଲୀଳା ଲାଗିଛି ପରା ! ଏହି ଅନୁସନ୍ଧାନରେ ମନୁଷ୍ୟ ପ୍ରଥମେ ବେଦନା ଦେଇ ଗଭୀର ଆନନ୍ଦ ପାଏ ଏବଂ କ୍ରମେ ଅନ୍ତର ଆତ୍ମା ଅନନ୍ତ ସତ୍ତାର ଅଭିମୁଖୀ ହୁଏ । ରହସ୍ୟବାଦୀ ପ୍ରଥମେ ଯେପରି ଏହି ସତ୍ତା ସଙ୍ଗେ ଲୁଚକାଳି ଖେଳେ ! ଏହି ସନ୍ଧାନରେ ମନୁଷ୍ୟର ଏକ ମାନସିକ ଅବସ୍ଥା ସୃଷ୍ଟି ହୁଏ । ତାହାକୁ ଆତ୍ମାର ଅନ୍ଧକାର ରାତ୍ରି (Dark night of the soul) କହନ୍ତି । ଏହି ଅନ୍ଧକାର ରାତ୍ରି ଘୋର

ମଧ୍ୟ ଦିନେ ଥିଲି । ଯୁଥିବାର ଅନେକ ରହସ୍ୟବାଦୀଙ୍କର ମଧ୍ୟ ଥିଲା ଏବଂ ମୋର ବିଶ୍ୱାସ ଏହା ରହିବ । ଆତ୍ମାର ଏହି ଅନ୍ଧକାର ସନ୍ଧିର କେତେ-ବେଳେ ମନୁଷ୍ୟ ଅନ୍ତର ଦୁଃଖ, କେତେବେଳେ ସୁଖ, କେତେବେଳେ ଆଶା, କେତେବେଳେ ଆଶଙ୍କା ଅନୁଭବ କରେ । ହୁଏତ ବିଦ୍ୟୁତର ଝଲସି ଭଳି କେତେବେଳେ ସେହି ଶକ୍ତିକୁ ମୁଁ ଉପଲବ୍ଧି କରୁଛି, କେତେବେଳେ ଅବା ମୁଁ ଧରିପାରୁ ନାହିଁ । ଏହି ନାମରୂପ ଜଗତରେ ମହାକାଶ ଓ ମହାକାଳ ବନ୍ଧନରେ ମନୁଷ୍ୟ ଅତି ସସୀମ । ତେଣୁ ଏହି କ୍ଷୁଦ୍ର କାୟ ଭିତରେ ସେହି ବିରାଟ ଶକ୍ତିକୁ ଅନୁଭବ କରିବାର, ଉପଲବ୍ଧି କରିବାର ସ୍ଥାନ କାହିଁ ?

ସେଥିପାଇଁ କେତେ ମୁଁ କାନ୍ଦୁଛି, ବ୍ୟାକୁଳ ହୋଇଛି ଓ ବେଦନାରେ ଦିନ ରାତି କଟାଇଛି । କାରଣ ମୁଁ ସେ ସେହି ଶକ୍ତିକୁ ଉପଲବ୍ଧି କରି ପାରୁନଥିଲି । ଭଲ ଭାବରେ ଧରି ପାରୁନଥିଲି । ରହସ୍ୟବାଦୀ ଜୀବନରେ ଏହା ପ୍ରଥମ ଓ ପ୍ରଧାନ ଅବସ୍ଥା ।

ଦ୍ୱିତୀୟ ଅବସ୍ଥା ଆସେ ସେତିକି ବେଳେ, ଯେତେବେଳେ ମନୁଷ୍ୟ ବୁଝେ ଯେ—

ଜାଣେ ତୋ ନିଯୁମେ ନିରତେ ଭ୍ରମେ,
ମନେ ମୋର ନାହିଁ ଆଉ ଭୟ,
ତୋହ ସୁଖ ପାଇଁ କରମେ ମୁଁ ଯାଇ,
ସତେ ଅଟେ ସୁଖ ସୃଷ୍ଟି-ଶ୍ରମ !

ଯେତେବେଳେ ମନୁଷ୍ୟର ଆତ୍ମା ଏହି ଦିବ୍ୟ ନିୟମର ସତ୍ତାକୁ ଗଭୀର ଭାବରେ ବୁଝେ, ଉପଲବ୍ଧି କରେ, ଯେତେବେଳେ ସେ ଜାଣେ ଯେ ଅନନ୍ତ, ଅବ୍ୟକ୍ତ, ଅସୀମ ଏହି ସାନ୍ତ ସୀମା ମଧ୍ୟରେ ବ୍ୟକ୍ତ, ସେତେବେଳେ ଆଉ ମନରେ ଦୁଃଖ ଥାଏ ନାହିଁ । ସେତେବେଳେ ଆତ୍ମା ପୂର୍ଣ୍ଣ ଆନନ୍ଦ ଉପଭୋଗ କରେ । ମନ ମହା ଶାନ୍ତି ପାଏ । କିନ୍ତୁ ଶାନ୍ତି ଅର୍ଥ ଜଡ଼ତା ବା ଆଳସ୍ୟ ନୁହେ । ସେତେବେଳେ ଦ୍ରଷ୍ଟା କହେ, ଉପନିଷଦର ଋଷିଙ୍କ ଭଳି କହେ, ଆନନ୍ଦରୁ ଜନ୍ମ, ଆନନ୍ଦରେ ସ୍ଥିତି ଓ ଆନନ୍ଦରେ ପରିଣତି । ଏହାହିଁ ଆତ୍ମାର ପୂର୍ଣ୍ଣିମା ରାତି ।

ରହସ୍ୟବାଦୀ ମନର ଦୁଇଟି ପ୍ରଧାନ ଅବସ୍ଥା ବର୍ଣ୍ଣନା କଲି । ଏହାର ଅନ୍ତର କ୍ରମ ବିକାଶ, ବିଭାଗ ଏବଂ ଉପବିଭାଗ ଅଛି ।

ଏହି ରହସ୍ୟବାଦ ସଙ୍ଗେ ଆଉ କେତେ ଗୁଡ଼ିଏ ବାଦର ଟିକିଏ ଆଲୋଚନା କରାଯାଉ । ବସ୍ତୁବାଦ, ହେତୁବାଦ, ହ୍ୟୁମାନିଜମ୍ ଓ ପ୍ରାଗ୍‌ମାଟିଜମ୍ ବୋଲି ନାନା ଖଣ୍ଡ ଦର୍ଶନ ଇଉରୋପୀୟ ଶବ୍ଦାବଳୀରେ ପ୍ରକାଶ ପାଇଅଛି । ଭାରତକୁ ଇଉରୋପରୁ ନାନା ଗ୍ରନ୍ଥରାଜ୍ୟ ସହିତ ଜିନିଷ ଆସିଲା ଭଳି ଏହା ମଧ୍ୟ ଆସିଛି । କେବଳ ଶବ୍ଦ ପରଦାରେ ଅଛି ନାହିଁ । ସେ ଯାହାହେଉ, ଚାର୍ବାକ ମଧ୍ୟ ଦିନେ ଋଣ କରି, ଘିଅ ପିଅ, ମଲା ଦେହର ପୁନରାଗମନ କେଉଁଠୁ ଆସିବ ବୋଲି କହିଥିଲେ । ଋଣ କରି ଘିଅ ପିଇବା କେତେଦୂର ହେତୁସମ୍ମତ, ତାହା ହେତୁବାଦୀ ଅର୍ଥନୀତିଜ୍ଞମାନେ କହିବେ । ମଲା ଦେହ ଫେରେ, ଏହି କଥା କୌଣସି ରହସ୍ୟବାଦୀ ଦାର୍ଶନିକ ମଧ୍ୟ ପ୍ରଚାର କରେ ନାହିଁ । ଯେଉଁମାନେ ଭାବନ୍ତି ଯେ ଏହି ଶୂନ୍ୟ ସବୁ, ସେମାନେ ଶେଷ ସତ୍ୟ କହି ନାହାନ୍ତି । ଏହି ପ୍ରକୃତିରୁ ଡାରୱିନ ନିୟମରେ ଜୀବନର କ୍ରମବିକାଶ ଓ ପ୍ରକାଶ ହେଉଅଛି ବୋଲି ଯେଉଁମାନେ ଭାବନ୍ତି ସେମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାର ଅଛି । ଏହି ପ୍ରକୃତି କେଉଁଠୁ ଆସିଲା ? ଏହି ପ୍ରଶ୍ନର ଉତ୍ତର କ'ଣ ?

ଏହା ସଙ୍ଗେ ସଙ୍ଗେ ରହସ୍ୟବାଦୀ ଦର୍ଶନରେ ମଧ୍ୟ ଅଦ୍ୱୈତ, ଅରୂପ, ଅବ୍ୟକ୍ତ, ଅକ୍ରିୟ, ଅସୀମ କାହିଁକି ରୂପ ଓ ସୀମାରେ କ୍ରିୟାବାନ ହୋଇ ଦ୍ୱୈତ ଭାବରେ ବ୍ୟକ୍ତ ହେଲା, ତାହା ମନୁଷ୍ୟ ଧାରଣା କରିପାରେ ନାହିଁ । ଏହା ଲୀଳା, ମାୟା, ରହସ୍ୟ ··· ! ଏହା ଚିର ଅବୁଝା ପ୍ରଶ୍ନ !

ଶଙ୍କର ବେଦାନ୍ତ ଭାଷ୍ୟରେ ଠାଏ ଏହି ସମ୍ପର୍କରେ ଲେଖି ଅଛନ୍ତି । ପିଲାଟିଏ ପଚାରିଲା, "ବାପା ! ଦଉଡ଼ି କାହିଁକି ରାତିରେ ସାପ ଭଳି ଦେଖାଯାଏ ?" ଅତି ଦାର୍ଶନିକ ପିତା ଭାବି ଭାବି ଏତିକି ମାତ୍ର ଉତ୍ତର ଦେଲେ, "ପୁଅ ! ଦେଖାଯାଏ ତ ?" ସୃଷ୍ଟି ରଜ୍ଜୁ-ସର୍ପ ଭ୍ରମ ସଦୃଶ ! କିମ୍ବା ସିନ୍ଧୁ ଓ ତରଙ୍ଗ ସମ୍ପର୍କ ସଦୃଶ !

ସୃଷ୍ଟି ପ୍ରକ୍ରିୟାରେ ଏମିତି ଘଟଣା ଘଟେ, ଏମିତି ମୁହୂର୍ତ୍ତ ଆସି ପହଞ୍ଚେ ଯେତେବେଳେ ହେତୁ, ପୁଣି ମନୁଷ୍ୟର ଅତି ସୀମାବଦ୍ଧ ବୁଦ୍ଧି ଖଣ୍ଡିଆ ବାଟରେ ଗୋଡ଼ ଖସିଯିବା ବୁଢ଼ା ଭଳି ଛଟ୍‌ପଟାଏ ମାତ୍ର । ବିଜ୍ଞାନ ମଧ୍ୟ ପରାସ୍ତ ହୋଇଅଛି । ଗୋଟିଏ ଶ୍ରେଷ୍ଠ ଉଦାହରଣ ଧରାଯାଉ । ବିଜ୍ଞାନକଳ୍ପିତ ମହାକାଶ (Space) ସାବୁନ ଫେଣ ଭଳି କ୍ରମ ପ୍ରସାରିତ ଓ ସଙ୍କୁଚିତ ହେଉଅଛି । ମହାକାଶ (Space)ର ଧାରଣା ଏହି ଯେ ଯେଉଁଥିରେ ଶକ୍ତି (Energy) ତରଙ୍ଗାୟିତ ହୁଏ । ଏହି ମହାକାଶ ପରେ କ'ଣ ଅଛି ?

ଇଲେକ୍ଟ୍ରନ୍ ଏକ ସୂକ୍ଷ୍ମ ଫାଙ୍କା (Hollow) ଅଂଶ । ଏହା ପରେ ଆଉ ସୂକ୍ଷ୍ମ ଅଂଶର ଧାରଣା ହୋଇପାରେ କି ? ବିଜ୍ଞାନ ଆଜି ସୃଷ୍ଟିର 'କାହିଁକି', 'କିପରି' ଓ 'କେଉଁଠାରୁ' ପ୍ରଶ୍ନ ମାନଙ୍କର ଏବେ ସନ୍ତୋଷଜନକ ଉତ୍ତର ଦେଇପାରି ନାହିଁ । ଏହା ମଧ୍ୟ ବିଜ୍ଞାନ ସୀମାର ବାହାରେ । ଏହା ହେତୁବାଦର ସୀମା ।

ବସ୍ତୁବାଦ ଦୃଷ୍ଟିରେ ପଦେ ମାତ୍ର କହିବା । ଯଦି ଏହି ପରିବର୍ତ୍ତନ ଓ କ୍ଷୟଶୀଳ ନାମ-ରୂପ ଜଗତ ପଛରେ ଆମ୍ଭେମାନେ ଏକ ଅପରିବର୍ତ୍ତନୀୟ, ଅନନ୍ତ, ଅକ୍ଷୟ ସତ୍ତା ନାହିଁ ବୋଲି କହୁଁ ; ତେବେ ସବୁ କଳ୍ପନା ଆମର କୋଣାର୍କ ଦେଉଳର ଚୂଡ଼ା ଭଳି ଭାଙ୍ଗିଯିବ । ଅର୍ଥାତ୍ ସୃଷ୍ଟିରେ କାହା ସହିତ କାହାର ସମ୍ପର୍କ ନାହିଁ । ଶିଳ୍ପୀର ସେପରି ଏକ ଜୀବନ୍ତ ସତ୍ୟକୁ ପ୍ରତ୍ୟକ୍ଷ କରି ତା'ର କମନୀୟ କଳା ଫୁଟାଏ, ସେହିପରି ଏକ ମୂଳାଧାରକୁ ଆଶ୍ରା କରି ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ଲୟ । ଏହି ଧାରଣା ମୋର କ୍ଷୁଦ୍ର ବୁଦ୍ଧିରେ ଜଗତର ସମ୍ୟକ୍ ଦୃଷ୍ଟିରୁ ମଙ୍ଗଳପ୍ରଦ । ଏହିଠାରେ ସେଥିପାଇଁ ହ୍ୟୁମାନିଜମ୍ (ଅର୍ଥାତ୍ ମଣିଷ ସମାଜର ମଙ୍ଗଳ ଦୃଷ୍ଟିରୁ ଯାହା ଭଲ ତାହା କରିବା ଉଚିତ) ରହସ୍ୟବାଦକୁ ସମର୍ଥନ କରେ ।

ଆଉ ପ୍ରାଗ୍‌ମେଟିଜିମ୍—ଯାହା 'ଫଳେନ ପରିଚୀୟତେ' ପରି ଏକ ଭାବ-ପ୍ରତିପାଦକ ଦର୍ଶନ । ପ୍ରାଗ୍‌ମେଟିଜିମ୍ ଦିଗରୁ ଦେଖିଲେ ମଧ୍ୟ ରହସ୍ୟ-ବାଦୀର ଧାରଣାର ଫଳ ଅତି ମଙ୍ଗଳପ୍ରଦ । ବିଶ୍ୱରେ ସର୍ବତ୍ର ଏକ ସ୍ୱର୍ଗୀୟ ଶକ୍ତି ପ୍ରକାଶ ପାଉଅଛି ବୋଲି ବିଶ୍ୱରେ ପରସ୍ପରକୁ ଆମ୍ଭେମାନେ ବେଶୀ ସମ୍ମାନ ଓ ଶ୍ରଦ୍ଧା ଦେଖାଇବା । ଅନ୍ତରାଳରେ ଏକ ବିରାଟ ସାମ୍ୟ ଅଛି ବୋଲି ଆମ୍ଭେମାନେ ସମସ୍ତେ ଏକ । ଏହା କେବଳ ମଣିଷ ଗୋଷ୍ଠୀରେ ଆବଦ୍ଧ ନୁହେ । ପଶୁ, ପକ୍ଷୀ, ଉଦ୍ଭିଦ, କୀଟ, ପତଙ୍ଗ ସର୍ବତ୍ର ସେହି ଶକ୍ତି ପ୍ରକାଶ ପାଉଛି ବୋଲି ସମସ୍ତଙ୍କର ଯତ୍ନ ନେବା, ସମସ୍ତଙ୍କୁ ଯଥାର୍ଥ ସମ୍ମାନ, ଶ୍ରଦ୍ଧା ଓ ସହାନୁଭୂତି ଦେଖାଇବା । ଏହାର ପ୍ରଭାବ ସାମାଜିକ, ରାଷ୍ଟ୍ରନୈତିକ ଜଗତଠାରୁ ନୈତିକ ଓ ମାନସିକ ଜଗତରେ କମ ନୁହେ । ଏହାଦ୍ୱାରା ହିଁ ମନୁଷ୍ୟ ହିଂସା, ଦ୍ୱେଷ, ପରଶ୍ରୀକାତରତା, ରାଗ ପ୍ରଭୃତି ମନ୍ଦ ଗୁଣରୁ ନିଜକୁ ନାଶ କରିଅଛି । ମଣିଷ ପଶୁ ନ ହୋଇ ଦେବତା ହେବା ସମ୍ଭବପର ହୋଇଅଛି ।

ପ୍ରକୃତ ରହସ୍ୟବାଦୀ ଜଗତ୍ ବା ଜାଗତିକ ପ୍ରକ୍ରିୟାକୁ କାହିଁ ହେୟ ଦୃଷ୍ଟିରେ ଦେଖେ ନାହିଁ । ବରଂ ଯେଉଁମାନେ ସାଧାରଣତଃ ଜଗତ୍ ମାୟା

ବା ମିଛ ବୋଲି କହନ୍ତି, ସେମାନେ ପ୍ରକୃତ ମାୟାବାଦ ବୁଝି ନାହାନ୍ତି । ଏହା ଏକ ଅତି ସାଧାରଣ ମନୋଭାବ । ବରଂ ସେହି ସତ୍ୟ-ସତ୍ତା ସର୍ବଦା ବିକଶିତ ବା ସ୍ଫୁରିତ ବୋଲି (ମହାବିଶ୍ୱୀୟ ସ୍ଫୂର୍ତ୍ତିବାଦ ତୁଳନୀୟ) ଜଗତ ସତ୍ୟ, ଶିବ ଓ ସୁନ୍ଦର । ସେ ନ ଥିଲେ, ଏ ନ ଥାଆନ୍ତା । ଏହାହିଁ ଯଥାର୍ଥ ରହସ୍ୟବାଦୀର ଦୃଷ୍ଟି । ରହସ୍ୟବାଦୀ ଏହି ଦିବ୍ୟ ଦୃଷ୍ଟିରେ ସୃଷ୍ଟିକୁ ଦେଖେ ବୋଲି, ସୃଷ୍ଟିକୁ ସେ ଅନ୍ତର ଆଦର ଓ ଉପଭୋଗ କରେ ଏବଂ ତହିଁରୁ ଅନ୍ତର ଗଭୀର ଆନନ୍ଦ ଅନୁଭବ କରେ ।

ରହସ୍ୟବାଦୀଗଣ ଜଗତରେ ନାନା ଯୁଗରେ ଜନ୍ମ ଲାଭ କରିଥିଲେ ଓ କରୁଅଛନ୍ତି । କେତେକ ରହସ୍ୟବାଦୀ ଦାର୍ଶନିକ ଓ ଧର୍ମ-ପ୍ରଚାରକ ହୋଇ ଅଛନ୍ତି । କେତେକ କେବଳ ଭାବୁକ ଭାବରେ ତନ୍ମୟ ହୋଇ ଗୀତ ଗାଇ ଗାଇ ଚାଲି ଯାଇଅଛନ୍ତି । ଶଙ୍କର, ଚୈତନ୍ୟ, ମୀରାବାଈ, ତୁକାରାମ, କବୀର, ନାନକ, ରାମଦାସ, ତୁଳସୀ, ଏକନାଥ ପ୍ରଭୃତି ଅନେକ ରହସ୍ୟବାଦୀ ଭାରତରେ ଥିଲେ । 'ପଞ୍ଚସଖା' ଉତ୍କଳରେ ମଧ୍ୟ ରହସ୍ୟବାଦୀ । ଏହି ରହସ୍ୟବାଦୀଙ୍କ ଚିନ୍ତାଧାରା ଯେତେବେଳେ ସାହିତ୍ୟରେ ପଡ଼ିଅଛି, ସେତେବେଳେ ସାହିତ୍ୟରେ ମଧ୍ୟ ରହସ୍ୟବାଦ ସ୍ଥାନ ପାଇଅଛି । ରହସ୍ୟ-ବାଦୀ କେବଳ ଭାରତବର୍ଷରେ ଆବଦ୍ଧ ନୁହନ୍ତି । ପୃଥିବୀର ବଡ଼ବଡ଼ ଦେଶର ସାହିତ୍ୟ, ଧର୍ମ, ଇତିହାସ ଆଲୋଚନା କଲେ, ଆମ୍ଭେମାନେ ଅନେକ ରହସ୍ୟବାଦୀ ଦେଖିବାକୁ ପାଇବା । ପ୍ରକାର ଓ ଅନୁଭୂତିର ପ୍ରଖରତା-ଭେଦରେ ଏମାନଙ୍କର ନାନା ଭାଗ, ବିଭାଗ ହୋଇପାରେ । କିନ୍ତୁ ଏହି ରହସ୍ୟବାଦ ସଙ୍ଗେ ସଙ୍ଗେ ରୂପକ-ବାଦ (Symbolism)ର ପାର୍ଥକ୍ୟ ବୁଝିବା ଆବଶ୍ୟକ । ସାଧାରଣତଃ ଦାର୍ଶନିକ ଭାବଧାରାକୁ ରୂପକରେ ପ୍ରକାଶ କରାଯାଏ । ବିଶ୍ୱସାହିତ୍ୟରେ ସେହିପରି ଆମ୍ଭେମାନେ ପାଞ୍ଚ ଛଅ ଜଣ ସାହିତ୍ୟିକ ଦେଖୁଁ । ସେମାନେ ସମସ୍ତେ ନୋବେଲ ପୁରସ୍କାର ପାଇଅଛନ୍ତି । ଏହି ରୂପକ-ବାଦୀମାନଙ୍କୁ ମଧ୍ୟ ଅନେକେ ରହସ୍ୟବାଦୀ ବୋଲି କହନ୍ତି । କିନ୍ତୁ ମେଟରଲିଙ୍କ, ୟେଟ୍‌ସ୍, ହାଉପ୍ଟ୍‌ମ୍ୟାନ୍, ଲୁଇ ପିରାଣ୍ଡେଲୋ ରହସ୍ୟବାଦୀ ଅପେକ୍ଷା ବେଶୀ ରୂପକ-ବାଦୀ । ତଥାପି ସେମାନଙ୍କର ରହସ୍ୟବାଦ ମଧ୍ୟ ଅଳ୍ପ ବହୁତ ଅଛି । ରବୀନ୍ଦ୍ରନାଥ ମଧ୍ୟ ରହସ୍ୟବାଦୀ । କିନ୍ତୁ ରବୀନ୍ଦ୍ରନାଥଙ୍କ ସବୁ କବିତାରେ ରହସ୍ୟବାଦ ଦେଖାଯାଏ ନାହିଁ । ସାଧାରଣ ଦାର୍ଶନିକ କବିତା ରହସ୍ୟବାଦ କବିତା ନୁହେ । ବୈଷ୍ଣବ କବିତା ଅନେକାଂଶରେ ରହସ୍ୟବାଦ ଘେନି ସୃଷ୍ଟି । ଆୟର୍ଲ୍ୟାଣ୍ଡର କବି ଏ, ଇ, ଆମେରିକାର

ମୁଲସ୍‌ମାନ ରହସ୍ୟବାଦୀ ଥିବ । ଅନେକ ଗ୍ରୀକ୍ ଦାର୍ଶନିକ ମଧ୍ୟ ରହସ୍ୟବାଦୀ । ରାମକୃଷ୍ଣ ପରମହଂସ, ବିବେକାନନ୍ଦ ଓ ଗାନ୍ଧୀ ରହସ୍ୟ-ବାଦୀ । ଅଧୁନାଙ୍କ ହିନ୍ଦୀ ସାହିତ୍ୟରେ 'ରହସ୍ୟ-ବାଦ' ମୂଳକ କବିତା ଲେଖା ଆରମ୍ଭ ହୋଇଅଛି । କିନ୍ତୁ ଏହା ପୂର୍ବରୁ ମୀରାବାଈ, କବୀରଙ୍କ ଭଜନ ପ୍ରଭୃତି ପୂର୍ଣ୍ଣ ରହସ୍ୟ-ବାଦମୂଳକ କବିତା ।

ସବୁ ରହସ୍ୟବାଦୀମାନେ ସେମାନଙ୍କ ଜୀବନର ପୂର୍ଣ୍ଣ ଦର୍ଶନ ଲିପିବଦ୍ଧ କରି ଯାଇ ନାହାନ୍ତି । ସେମାନଙ୍କ ଲେଖାବଳୀରୁ ସେମାନଙ୍କ ବ୍ୟବହାରର ପରିଚୟ ମିଳିଲେ ମଧ୍ୟ ସେମାନଙ୍କର ଜୀବନ ଦର୍ଶନ ସ୍ପଷ୍ଟ ଭାବରେ ମିଳି ନପାରେ । କିନ୍ତୁ ରହସ୍ୟବାଦୀ ଭାବରେ ମୋର କ୍ଷୁଦ୍ର-ଜୀବନର ଦର୍ଶନ ଏଠାରେ ଲିପିବଦ୍ଧ କରି ପ୍ରବନ୍ଧର ଉପସଂହାର କରିବି । ଯେତେବେଳ ଯାଏ ମନୁଷ୍ୟ ଅନନ୍ତ ନିୟମ ବୁଝେ ନାହିଁ, ସେତେବେଳଯାଏ ସେ ଦୁଃଖ, ଯନ୍ତ୍ରଣା ଭୋଗ କରେ । ଏକ ଅପରସୀମ, ସର୍ବବ୍ୟାପୀ ଅନନ୍ତ, ଅନାଦି ଶକ୍ତିରେ ମୁଁ ବିଶ୍ୱାସ କରେଁ । ସେ ଶକ୍ତି ସତ୍ୟ, ଶିବ ଓ ସୁନ୍ଦର । ତାହାଙ୍କୁ ବ୍ୟାବହାରିକ ଜଗତରେ (Empirical world) ମନୁଷ୍ୟ ସସୀମ ବୁଦ୍ଧିରେ ହୁଏତ ସବୁବେଳେ ବୁଝିପାରେ ନାହିଁ । ମନୁଷ୍ୟ ଅତି କ୍ଷୁଦ୍ର ଓ ସୀମାବଦ୍ଧ । ତେଣୁ ହୁଏତ ସେହି ଶକ୍ତିର ଧାରଣା ସବୁ ସମୟରେ ଭଲ ଭାବରେ କରି ପାରୁ ନାହିଁ, ଏଥିପାଇଁ ତାଙ୍କୁ ଅବିଶ୍ୱାସ କରିବା ମୂଢ଼ତା । 'ନେତିନେତି'ରୁ ମଧ୍ୟ 'ଅସ୍ତି'ର ଉପଲବ୍ଧି ହୋଇପାରେ । ସେଥିପାଇଁ ଧୈର୍ଯ୍ୟ ଅବଲମ୍ବନ କରି ଅନୁସନ୍ଧାନ କଲେ ହେଲା । ମନୁଷ୍ୟ ଜାଣୁ ବା ନ ଜାଣୁ ସେହି ନିୟମ ଦ୍ୱାରା ଯେ କେବଳ ମନୁଷ୍ୟ ନୁହେ, ସାରା ସୃଷ୍ଟି ଚାଲିଛି, ଏହା ମୋର ଦୃଢ଼ ଧାରଣା । ନିୟମ ଓ ନିୟମକର୍ତ୍ତା ଏକ ।

ନିୟମକର୍ତ୍ତା ମନୁଷ୍ୟ ଅନ୍ତରରେ ରହି ମନୁଷ୍ୟକୁ ଚଳାଉଅଛନ୍ତି । ମନୁଷ୍ୟକୁ ସେ କେତେଗୁଡ଼ିଏ ବିଷୟ ଭିତ୍ର, ଶକ୍ତି ବିଗ୍ରହର ପ୍ରୟୋଗ କରି କାମ କରିବାକୁ ସ୍ୱାଧୀନତା ଦେଇ ଅଛନ୍ତି । ନିୟମ ଭଙ୍ଗ କଲେ, ମନୁଷ୍ୟ ତାହାର ଫଳ ଭୋଗିବ । କର୍ମ ନିୟମରେ ମନୁଷ୍ୟ ଶୃଙ୍ଖଳିତ । ଭଗବାନ କେବଳ ତାହାଙ୍କର ବହୁତପତ୍ର ଆସନରେ ବସି ମନୁଷ୍ୟକୁ ଦେଖୁ ନାହାନ୍ତି । ଭଗବାନ ଓ ମନୁଷ୍ୟ ପରସ୍ପର ସଂପୃକ୍ତ ।

ଦୁଃଖ ଆମ ଭ୍ରମରୁ । ସୃଷ୍ଟିର ପ୍ରକୃତ ସ୍ୱରୂପ ବୁଝିଲେ, ବୃଥା ଦୁଃଖର ସ୍ଥାନ ଆଉ ଥାଏ ନାହିଁ । ବୃଥା ଦୁଃଖ ବା ଶୋକ ଅଜ୍ଞାନତାର ଚିହ୍ନ । ଜୀବନରେ ବାଧା, ବିଘ୍ନ ଓ ବିପଦ ପଡ଼ିବ । ଏହାହିଁ ଜୀବନ । କିନ୍ତୁ ଏହାର

ମଧ୍ୟରେ ଧୈର୍ଯ୍ୟ ଅବଲମ୍ବନ କରି ବିଶ୍ବର ସୁକର୍ମ ପଥରେ ଅଗ୍ରସର ହେବା ମନୁଷ୍ୟୋଚିତ।

ମୁଁ ରହସ୍ୟ-ବାଦୀ ବୋଲି, ବସ୍ତୁ ବା ସ୍ଥୂଳ ପଛରେ ସୂକ୍ଷ୍ମତତ୍ତ୍ୱ ଉପଲବ୍ଧି କରେ ବୋଲି, ତେବେ ସ୍ଥୂଳ (ଦେହ) ବା ଜାଗତିକ ଜୀବନ ବିକାଶକୁ ହେୟ ଦୃଷ୍ଟିରେ ଦେଖେ ନାହିଁ; ବରଂ ସେହି ଶକ୍ତି ସବଂଶ ଲୀଳାସ୍ଥିତ ବୋଲି ସ୍ଥୂଳକୁ ମୁଁ ବେଶୀ ସମ୍ମାନ, ଶ୍ରଦ୍ଧା ଓ ଆଦର ପ୍ରଦର୍ଶନ କରେ।

ଜୀବନ ଜଟିଳ। ଜୀବନର ଏହି ଜଟିଳତା ମଧ୍ୟରେ ହେତୁ ଓ ବସ୍ତୁକୁ ପୂର୍ଣ୍ଣ ଏଡାଇବା ଅନୁଚିତ। କେହି ମନୁଷ୍ୟ ଏଡ଼ାଇ ପାରିବ ନାହିଁ। କିନ୍ତୁ ମନୁଷ୍ୟର ହେତୁ ସୀମାବଦ୍ଧ। ବସ୍ତୁ ମଧ୍ୟ। ରହସ୍ୟବାଦ ଯେ ପୂର୍ଣ୍ଣ ହେତୁହୀନ ହେବ, ଏମିତି ନୁହେଁ। ତଥାପି ଏହି ରହସ୍ୟବାଦ ବିରୁଦ୍ଧରେ ଯଦି କୌଣସି ବସ୍ତୁବାଦୀ ଓ ହେତୁ-ବାଦୀଙ୍କର କିଛି କହିବାର ଥାଏ, ସେମାନେ ମୁକ୍ତ କଣ୍ଠରେ କହି ପାରନ୍ତି। ଏହା ଯଦି ରହସ୍ୟବାଦର ପ୍ରକୃତ ତାତ୍ପର୍ଯ୍ୟ ନୁହେଁ, ଆଉ ତେବେ କ'ଣ ?



# ବୃହତ୍ତର

କେନ୍ଦୁଝରର ଏକ କ୍ଷୁଦ୍ର ମାଟି କୁଡ଼ିଆରେ ଯେ ଲୋକ ଅଜଣା, ଅଚିହ୍ନା ଭାବରେ ବାସ କରେ, ସେ ନିଶ୍ଚୟ ଅତି କ୍ଷୁଦ୍ର ଜୀବଟିଏ । କିନ୍ତୁ ସେ ମଣିଷ । ମଣିଷ କ୍ଷୁଦ୍ର । କ୍ଷୁଦ୍ରତା ମଣିଷର ନାନା କର୍ମରେ ଫୁଟି ଉଠେ । ଘର, ଜମି, ବାଡ଼, ବଗିଚା, ଶିକାର, ଅଫିସ, ଫାଇଲ, ଖେଳ, ହିସାବ କିତାବ ବୋଧହୁଏ ଗୋଟିଏ ଦିଗରୁ ଅତି କ୍ଷୁଦ୍ର କାମ । ମନୁଷ୍ୟ ନିଜ ଠାରେ, ନିଜ ପରିବାରରେ, ନିଜ ଗୃହରେ ତାର ଦୃଷ୍ଟି ଅବଦ୍ଧ କରି ଅନେକ ସମୟରେ ରହେ । ଏହା ଗୋଟିଏ ଅତି ସାଧାରଣ ଘଟଣା । ଆଉ ଗୋଟିଏ ଦିଗରୁ ଭାବିଲେ ମଧ୍ୟ ମନୁଷ୍ୟ ଅତି କ୍ଷୁଦ୍ର । ହିଟଲର, ମୁସୋଲିନୀ, ଗାନ୍ଧୀ, ଜବାହରଲାଲ କିମ୍ବା ଭାରତୀୟ ଅତୀତ, ବର୍ତ୍ତମାନ ଯେ କୌଣସି ରାଜା ବାଦ୍‌ସାହଙ୍କଠାରୁ ଆରମ୍ଭ କରି ପାଣ, କଣ୍ଡରା, ଭୂୟାଁ, ଜୁଆଙ୍ଗ, ମାଂଝୀମାନଙ୍କ ଯାଏ ମଧ୍ୟ ଏହି କ୍ଷୁଦ୍ରତା ସହଜରେ ଦେଖାଯିବ । ମହାବ୍ୟୋମ ( Space ) ମହାକାଳ ( Time ), କିମ୍ବା ନିହାରିକା ତାରା, ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର, ପୃଥିବୀ ବା ପ୍ରକୃତି ତୁଳନାରେ ମନୁଷ୍ୟ କି କ୍ଷୁଦ୍ର ! ମଣିଷ ସତେ ରେଣୁଟିଏ ସିନା ! ଏ ତ ଅତି ଦୂର କଥା । କେନ୍ଦୁଝର ରାଜାଙ୍କ ପାଟହାତୀ ତୁଳନାରେ କିମ୍ବା ରୋଲସ୍‌ରୟସ୍ ମଟରଗାଡ଼ି ତୁଳନାରେ ମଣିଷ କି କ୍ଷୁଦ୍ର ! ଆହାର ଦିଗରୁ ବିଚାର କଲେ ମଧ୍ୟ ମଣିଷ ଅତି କ୍ଷୁଦ୍ର ଜୀବଟିଏ । ଅବଶ୍ୟ ମଣିଷଠାରୁ ଆହୁରି କ୍ଷୁଦ୍ରତର ଓ କ୍ଷୁଦ୍ରତମ ପ୍ରାଣୀ ଅଛନ୍ତି, କିନ୍ତୁ ତାହାହେଲେ ମଧ୍ୟ ମଣିଷ ଏକ ପ୍ରକାଣ୍ଡକାୟ ଜୀବ ନୁହେଁ । ତେଣୁ କ୍ଷୁଦ୍ର ମଣିଷର ବୃହତ୍ତର କଥା ଭାବିବାର କି ଯାଏ ଆସେ ? ହୁଏତ କୌଣସି ଫରେଷ୍ଟର ତାଙ୍କ ଜଙ୍ଗଲ ବିଷୟକ କାଗଜ ପତ୍ର ନେଇ, କୌଣସି କଳା-ରସିକ ତାହାଙ୍କ କଳା କୋଟିଙ୍କମ ନେଇ, ହୁଏତ କୌଣସି ପକ୍ଷୀ-ପାଳକ ତାହାଙ୍କ ପ୍ରିୟ ପକ୍ଷୀକୁ ନେଇ ସନ୍ତୁଷ୍ଟ । କେତେ କାବ୍ୟପ୍ରେମିକ ତାହାଙ୍କ କାବ୍ୟର ପଙ୍କ୍ତି ରଚି ଅଛନ୍ତି । ଆଜି ଦିନଟି, ଅର୍ଥାତ୍ ଡିସେମ୍ବର ଦଶ ତାରିଖ ଅନନ୍ତ କାଳ ଗର୍ଭରେ କି କ୍ଷୁଦ୍ର ! ତେବେ ବୃହତ୍ତର ବିଷୟରେ ମୁଣ୍ଡ ଘୂରାଇବାର ଆଉ କି ପ୍ରୟୋଜନ ?

କିନ୍ତୁ ଟିକିଏ ଦୂରଦୃଷ୍ଟିସମ୍ପନ୍ନ ଭାବିଲେ ଦେଖାଯିବ ଯେ କ୍ଷୁଦ୍ର ସର୍ବଦା ବୃହତ ହେବାକୁ ବ୍ୟଗ୍ର, ଏବଂ କ୍ଷୁଦ୍ରହିଁ ବୃହତ୍ । କ୍ଷୁଦ୍ର ମଧ୍ୟରେ ଏକ ବୃହତ୍ତର ଶକ୍ତି ନିହିତ । ଯେଉଁ ଛୋଟ ମେଘ ଖଣ୍ଡି ଆକାଶର ଗୋଟିଏ

କ୍ଷଣରେ ଉଦୟ ହୁଏ, ତାହା ପୁଣି କ୍ଷଣକେ ବିଶାଳ ନୀଳ-ଅମ୍ବରକୁ ଘୋଟି ରଖେ । ଯେଉଁ କ୍ଷୀଣ ଅଗ୍ନିକଣା ବଣ ମଧ୍ୟରେ ପଡ଼ି ରହିଥାଏ, ତାହା ପୁଣି ଏକ ବିରାଟ ଦାବାନଳ ସୃଷ୍ଟି କରି ଫରେଷ୍ଟ ଗାର୍ଡଠାରୁ ଆରମ୍ଭ କରି ସମଗ୍ର ସମୟରେ ଫରେଷ୍ଟ ଅଫିସରଙ୍କୁ ବ୍ୟତିବ୍ୟସ୍ତ କରେ । କ୍ଷୁଦ୍ର ମଧ୍ୟରେ ଏକ ବୃହତ୍ତର ଶକ୍ତି ପ୍ରଚ୍ଛନ୍ନ ଭାବରେ ଅଛି । ସୃଷ୍ଟିର ପ୍ରାତ୍ୟହିକ ବସ୍ତୁ ଓ କାର୍ଯ୍ୟକୁ ବିଶ୍ଳେଷଣ କରି ଚିନ୍ତା କଲେ ଜଣାଯିବ ଯେ ବୃହତ୍ତରହିଁ ବିଶ୍ୱ-ଜୀବନର ମୂଳାଧାର । ମନୁଷ୍ୟ କ୍ଷୁଦ୍ର ହୋଇ ମଧ୍ୟ ବୃହତ ବ୍ରହ୍ମାଣ୍ଡର ଏକ ଶକ୍ତିଶାଳୀ ଅଧିକାରୀ । ଆମ ଶିର ଉପରର ଅଗଣିତ ତାରା, ନକ୍ଷତ୍ର, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ଆମ ଗୃହ ଅଭ୍ୟନ୍ତରର ମହାବ୍ୟୋମ, ପାଣି, ପବନ, ପାହାଡ଼, ବଣ, ମାଟି, ପଥର ଓ ଝରଣା ମଣିଷ ମନରେ କ୍ଷଣକେ ଯେ ଏକ ବୃହତ୍ତର ସ୍ୱପ୍ନ ଆଙ୍କି ଦିଅନ୍ତି; ଏଥିରେ ସନ୍ଦେହ କରିବାର କାରଣ କଅଣ ଅଛି ? ପ୍ରତ୍ୟେକ ଅନୁଭବୀ ଏ ସତ୍ୟର ସାକ୍ଷୀ ଦେବେ ।

ବୃହତ୍ତର କେବଳ ପ୍ରକୃତି, ଜଗତ ବା ମନ ରାଜ୍ୟରେ ନାହିଁ । ଆଜି ବିଜ୍ଞାନ ଯେ ସମସ୍ତ ପରୀକ୍ଷା ଆରମ୍ଭ କରିଅଛି ଏବଂ ଯେ ସମସ୍ତ ସତ୍ୟ ମାନବ ସମାଜକୁ ଦେଇ ପାରିଅଛି, ତହିଁରୁ ଦୁଇଟି ସତ୍ୟ ସାର । ଗୋଟିଏ ଇଲେକ୍‌ଟ୍ରନ୍ ଅଣୁ, ଅନ୍ୟଟି ସାରୁନ ଫେଣ ପରି ନିର ପ୍ରସାରିତ ଓ ସଙ୍କୁଚିତ ମହାବ୍ୟୋମ ( Space ) ର ଧାରଣା । ଏହି ବୈଜ୍ଞାନିକ ପର୍ଯ୍ୟବେକ୍ଷଣରେ ଗୋଟିଏ ବଡ଼ ସତ୍ୟ ଫୁଟି ଉଠିଅଛି । ତାହା ହେଉଛି କ୍ଷୁଦ୍ର, କ୍ଷୁଦ୍ର ବନ୍ଧନରୁ ବିଶ୍ୱ ମୁକ୍ତି ଲଭ କରିଅଛି । ମଣିଷ, ଗଛ ଲତା, ପଶୁ ପକ୍ଷୀ, ମାଟି, ପଥର, ପାଣି ସମସ୍ତେ ଯେ ଏକ ଇଲେକ୍‌ଟ୍ରନ୍ ଅଣୁରେ ତିଆରି, ଏହା ପରୀକ୍ଷିତ ।

ଏମାନେ ଯେ ସମସ୍ତେ ମହାବ୍ୟୋମ (Space) ଓ ମହାକାଳ (Time) ଛନ୍ଦରେ ନିୟନ୍ତ୍ରିତ ଏଥିରେ ବୈଜ୍ଞାନିକମାନେ ଆଉ ସନ୍ଦେହ କରୁ ନାହାନ୍ତି । ବିଜ୍ଞାନର ପଦ ଆଉ ଅଗ୍ରସର ନ ହୁଏ, ତଥାପି ସବୁ ହେତୁବାଦୀ ( Rationalist ) ବୈଜ୍ଞାନିକଙ୍କ ପାଇଁ ମଧ୍ୟ 'କ୍ଷୁଦ୍ର'ର ସ୍ଥାନ ନାହିଁ । ବିଜ୍ଞାନ ଅତି କ୍ଷୁଦ୍ର ମଧ୍ୟରେ ଏକ 'ବୃହତ୍ତର'ର କଳ୍ପନା କରିଅଛି । କେବଳ କଳ୍ପନା କରି ନାହିଁ; ବୈଜ୍ଞାନିକ ପର୍ଯ୍ୟବେକ୍ଷଣାଗାରରେ (Laboratory) ପ୍ରମାଣ କରି ଦେଖାଇ ଦେଇ ଅଛନ୍ତି ଯେ ବିଶ୍ୱ ସର୍ବଦା ଏକ ସୂକ୍ଷ୍ମ ବୃହତ୍ତର ସତ୍ତା ଅଭିମୁଖୀ । ବୃହତ୍ତର ସତ୍ତାକୁ ଛାଡ଼ି କ୍ଷୁଦ୍ର ତିଷ୍ଠି ପାରେ ନାହିଁ । ଏହା ସୃଷ୍ଟିର ଏକ ଶ୍ରେଷ୍ଠ ନିୟମ ଓ ସତ୍ୟ । ବିଜ୍ଞାନ ଆଜି ଯାହା ପ୍ରମାଣ କରିଛି ବା ଆହୁରି ଯାହା ପ୍ରମାଣ କରିବ, ତାହା ପୂର୍ବରୁ

ଅନ୍ତର ଏକ ଅତି ବୃହତ୍ତର ଧାରଣା ମଣିଷ ମନରେ ଥିଲା କି ନାହିଁ, ସେତକ ଭାବ ଦେଖିବାର ଅଛି । ତାହା ଆଧ୍ୟାତ୍ମିକ ଜଗତର କଥା ।

କିନ୍ତୁ ତାହା ପୂର୍ବରୁ ସଭିଏଁ ସ୍ୱୀକାର କରିବେ ଯେ ଆଦର୍ଶ ଜଗତରେ ମଣିଷ ସର୍ବଦା ଏକ 'ବୃହତ୍ତର' ପଶ୍ଚାତରେ ଧାବିତ । ଯେତେବେଳେ ଶ୍ରୀରାମଚନ୍ଦ୍ର ପ୍ରଜାମାନଙ୍କ ମନୋରଞ୍ଜନ ପାଇଁ ସୀତାଙ୍କୁ ବନବାସ ପଠାଇଲେ, ଯେତେବେଳେ ସିଦ୍ଧାର୍ଥ ବୌଦ୍ଧିତ୍ୱ ଲାଭ ନିମିତ୍ତ ନିଜର ରୂପବତୀ ରାଣୀ ଯଶୋଧାରା ଓ ନବଜାତ ଶିଶୁପୁତ୍ର ରାହୁଲଙ୍କୁ ପରିତ୍ୟାଗ କଲେ, ଯେତେବେଳେ ଅଶୋକ ଚଣ୍ଡାଶୋକ ନ ହୋଇ ଧର୍ମାଶୋକ ହେଲେ ବା ଯେତେବେଳେ ରାଜା ହର୍ଷବର୍ଦ୍ଧନ ପଞ୍ଚ ବର୍ଷରେ ସମସ୍ତ ରାଜକୀୟ ସମ୍ପତ୍ତି ଦାନ କରିଦେଇ ଦାଣ୍ଡର ଭିକାରୀ ହେଉଥିଲେ, ଯେତେବେଳେ ଜର୍ମାନୀର ପ୍ରସିଦ୍ଧ ବୈଜ୍ଞାନିକ (ବର୍ତ୍ତମାନ ଦେଶରୁ ବିତାଡ଼ିତ) ଆଇନଷ୍ଟାଇନ 'ସମ୍ବନ୍ଧବାଦ' (Theory of Relativity) ଭାବି ବସିଥିଲେ ବା ମାଡ଼ାମ କ୍ୟୁରୀ ରେଡ଼ିୟମ ଅଣୁ ଅନୁଷ୍ଠାନ କରୁଥିଲେ ଅବା ଯେତେବେଳେ ଧ୍ରୁବ ରାଜପୁତ୍ର ଭାବରେ ସମସ୍ତ ରାଜକୀୟ ବିଭବ ପରିତ୍ୟାଗ କରି ଭଗବତ୍ ଉପଲବ୍ଧି ନିମିତ୍ତ ବନଗାମୀ ହେଲେ, ଯେତେବେଳେ ପ୍ରହ୍ଲାଦ ନିଜର ଉପଲବ୍ଧ ସତ୍ୟର ପ୍ରତିଷ୍ଠା ପାଇଁ ପିତାଙ୍କର ବିରୁଦ୍ଧତା ଅବଲମ୍ବନ କରି ସମସ୍ତ ଯନ୍ତ୍ରଣାକୁ ତୁଚ୍ଛ ଜ୍ଞାନ କଲେ, ଅଭିମନ୍ୟୁ ନୀଡ଼ା କୌତୁକ ଛଳେ 'ଯୁଦ୍ଧ ବ୍ୟୂହ'ରେ ପ୍ରାଣବଳି ଦେଲେ, ଯେତେବେଳେ ଧରମା ବାରଶ ବଢ଼େଇଙ୍କ ପ୍ରାଣରକ୍ଷା ପାଇଁ କୋଣାର୍କ ଚୂଡ଼ାରୁ ସମୁଦ୍ର ଗର୍ଭକୁ ଲମ୍ଫ ପ୍ରଦାନ କଲା, ଅବା ଯେତେବେଳେ ବାଲ୍ମୀକି ରାମାୟଣ ଓ ବ୍ୟାସଦେବ ମହାଭାରତ ଲେଖି ବସିଥିଲେ, ସେତେବେଳେ ସେମାନେ ସମସ୍ତେ କ୍ଷୁଦ୍ରକୁ ଭୁଲି, କ୍ଷୁଦ୍ର-ସ୍ୱାର୍ଥକୁ ପଦରେ ଦଳି ବୃହତ୍ତର ଆଦର୍ଶରେ ଯେ ଅନୁପ୍ରାଣିତ ହୋଇଥିଲେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଇତିହାସ ପୃଷ୍ଠା ଓଲଟାଇଲେ ଏହିପରି ଶତ ଶତ ନର, ନାରୀ ବୃହତ୍ତର ଆଦର୍ଶ ପାଇଁ ଯେ ତ୍ୟାଗ କରିଥିଲେ, କ୍ଷୁଦ୍ରକୁ ବଳିଦାନ ଦେଇଥିଲେ, ଏହାର ପ୍ରମାଣ ପ୍ରତ୍ୟକ୍ଷ ମିଳିବ । ଏହା ଐତିହାସିକ ଘଟଣା ।

କିନ୍ତୁ ଯେଉଁମାନଙ୍କ ନାମ କୌଣସି ଇତିହାସରେ ଲେଖା ଯାଇନାହିଁ, ସେପରି ମଧ୍ୟ ଅନେକ କ୍ଷୁଦ୍ର ମଣିଷ ବା ନର ନାରୀ ଦୁନିଆରେ ଥିଲେ, ଅଛନ୍ତି ଓ ରହିବେ; ଯେଉଁମାନେ କିଛି ନା କିଛି ବୃହତ୍ତର ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତି । ଯେତେବେଳେ ମାଆ ସନ୍ତାନକୁ ତା' ଦେହରୁ ନିଜ ସ୍ତନ

ବା ଆହାର ଦାନ କରି ଜୀବନ ବଞ୍ଚାଏ, ସେତେବେଳେ ସେହି ମାଆ ପଶୁ, ପକ୍ଷୀ, ମଣିଷ ଯାହା ହେଉନା କାହିଁକି, ସେ ଯେ ଏକ ବୃହତ୍ତର ଆଦର୍ଶରେ ଅନୁପ୍ରାଣିତ, ଏଥିରେ ମତଦ୍ୱୈଧ ଆଦୌ ହୋଇ ନ ପାରେ । ଏହିପରି ସୃଷ୍ଟିରେ ଅଗଣିତ ଦୃଷ୍ଟାନ୍ତ ଦିଆଯାଇ ପାରେ ।

ଆମ ଗୃହପଟେ ଯେ ଏହି ପ୍ରକୃତ ନିତ୍ୟ ନୂତନ ଭାବରେ ଉଦ୍ଭାସିତ ହୋଇ ଉଠେ, ତାହା ମଧ୍ୟ ସର୍ବଦା ଏକ ବୃହତ୍ତର ସ୍ୱାକ୍ଷର ପରିଚୟ ଦିଏ । ନିସ୍ୱାର୍ଥ ଭାବ 'ବୃହତ୍ତର'ର ଏକ ଶ୍ରେଷ୍ଠ ଗୁଣ । ଗଛ ଛାୟା-ଦାନ କରେ, ସୂର୍ଯ୍ୟ ଆଲୋକ ଦିଅନ୍ତି, ଚନ୍ଦ୍ର ଜ୍ୟୋତ୍ସ୍ନା ଢାଳନ୍ତି, ପବନ ଶୀତଳତା ଦାନକରେ, ମେଘରୁ ବୃଷ୍ଟି ହୋଇ ଧରଣୀ ଫଳପୁଷ୍ପବତୀ ହୋଇ ପ୍ରାଣୀଙ୍କ ଜୀବନ ଧାରଣରେ ସାହାଯ୍ୟ କରେ, ଏହା ସମସ୍ତ ସେହି 'ବୃହତ୍ତର'ର ଏକ ଏକ ସ୍ମାରକ ବା ପ୍ରତୀକ ନୁହନ୍ତି କି ? ଜୀବନ ଓ ଜଗତ ମୂଳତଃ ସୃଷ୍ଟି ଏକ 'ବୃହତ୍ତର'ର ଶ୍ରେଷ୍ଠ ସ୍ମାରକ ।

ବୃହତ୍ତର ବିକାଶ ମଧ୍ୟ ମାନବିକ ଅନୁଷ୍ଠାନରେ ସର୍ବଦା ଜାଗ୍ରତ । ଜାତି ଓ ଜାତୀୟ ଜୀବନ ଯେମିତି ଏକ 'ବୃହତ୍ତର'ର ସୂଚନା ଦିଏ, ବ୍ୟକ୍ତି ଓ ବ୍ୟକ୍ତିଗତ ଜୀବନ ସେହିପରି ଏକ କ୍ଷୁଦ୍ର ସୂଚନା ଦିଏ । ବ୍ୟକ୍ତିଗତ ଜୀବନ କାଳ୍ ଶଶାନ୍ତରେ ଶେଷ ହେବ । କିନ୍ତୁ ମଣିଷ ଗୋଷ୍ଠୀ ଭାବରେ ଅନ୍ତତଃ ଅନେକ କାଳଯାଏ ସଂସାରରେ ରହିବ ବୋଲି ଆମର ବିଶ୍ୱାସ । ତେଣୁ ସାମାଜିକ, ଜାତୀୟ କିମ୍ବା ବିଶ୍ୱୀୟ ଜୀବନରେ 'ବୃହତ୍ତର'ର ଏହି ଦିଗଟିକୁ ବିଶେଷ ଭାବରେ ଉପଲବ୍ଧି କରିବା ଓ ଅନ୍ୟକୁ ଉପଲବ୍ଧି କରାଇବାରେ ଏ ଯୁଗରେ ଯଥେଷ୍ଟ କାର୍ଯ୍ୟ କରାଯାଇ ପାରେ ।

ପ୍ରଜା ଲାଗି ରାଜା । ପ୍ରଜାଙ୍କ ମନୋରଞ୍ଜନ କରନ୍ତି ବୋଲି ସେ ରାଜା । ଲୋକଶାସନରେ ମଧ୍ୟ ସେହି ନୀତି; ନେତା ବା ରାଷ୍ଟ୍ରପତି ବା ଲୋକପତି ଲୋକଙ୍କୁ ନେଇ । ଅବଶ୍ୟ ବ୍ୟକ୍ତିତ୍ୱ ସବୁଠି କାମ କରେ, କିନ୍ତୁ 'ବୃହତ୍ତର'ର ଆଦର୍ଶ ସବୁବେଳେ ବ୍ୟକ୍ତିତ୍ୱ ଆଗରେ ରଖା ଯାଇଥାଏ । ବ୍ୟକ୍ତିର ମଧ୍ୟ ଏହି ଆଦର୍ଶ ଭୁଲି ନ ଯିବା ଉଚିତ । ଜଣେ ମନୁଷ୍ୟର ଭଲ କାର୍ଯ୍ୟରେ ସାରା ମଣିଷ ସମାଜର ଗର୍ବ ଅନୁଭବ କରିବା କଥା । ଜଣେ ମନୁଷ୍ୟର ଦାରିଦ୍ର୍ୟ, ଲାଞ୍ଛନା ଲାଗି ସାରା ମାନବ ସମାଜ ଭାବିବା ଉଚିତ । ଏହାହିଁ ସାମାଜିକ ଜୀବନରେ 'ବୃହତ୍ତର'ର ଆଦର୍ଶ । ସମାଜ ଓ ଜାତିର ଏହି ଗୋଷ୍ଠୀମୂଳକ ଲକ୍ଷ୍ୟ ସର୍ବଦା ପ୍ରତ୍ୟେକ ମନୁଷ୍ୟ ଆଖି ଆଗରେ ରଖିବା ଉଚିତ । କିନ୍ତୁ ଆଉ ଗୋଟିଏ କଥା ; ଜାତି ବା ଜାତୀୟ ଜୀବନ ଭାବିବା

କେବଳ ସ୍ୱପ୍ନ ରାଜ୍ୟରେ । ବାସ୍ତବତାରେ ଏହାର ପ୍ରଥମ ମୂଳଦୁଆ ନୁହେଁ । ଅବଶ୍ୟ 'ମନର ମୂଳେ ଏ ଜଗତ' ଭାଗବତ ପଦ । କିନ୍ତୁ ମନରେ ଏହି ବୃହତ୍ତର ଭାବଟି ଦୃଢ଼ ହେଲା ପରେ, ବାସ୍ତବ କ୍ଷେତ୍ରରେ କର୍ମ କରିବା ଉଚିତ । ଯେଉଁମାନେ ବୃହତ୍ତରର ଜାତୀୟ ଆଦର୍ଶରେ ଅନୁପ୍ରାଣିତ, ସେମାନେ ଜାତୀୟ କଳଙ୍କ, ଅପମାନ ବା ଅବମାନନା ସହିବେ କିପରି ? କିନ୍ତୁ ଜାତିର 'ବୃହତ୍ତର'ର ଆଦର୍ଶରେ ଯେ ଖାଲି ଜାତୀୟ ନେତା, ରାଜ୍ୟର ବୃହତ୍ତର ଆଦର୍ଶରେ ଯେ କେବଳ ରାଜା ଅନୁପ୍ରାଣିତ ହେବେ, ଏମନ୍ତ ନୁହେଁ । ରାଜା, ପ୍ରଜା, ଶାସକ ଓ ଶାସିତ ଉଭୟ ଏହି ବିରାଟ ସାମାଜିକ ଆଦର୍ଶରେ ଅନୁପ୍ରାଣିତ ହେବା ବିଧେୟ ।

କିନ୍ତୁ ଏହି ପ୍ରସଙ୍ଗରେ ଗୋଟିଏ କଥା ପଚାରି ବସିବାକୁ ଅଛି । ଓଡ଼ିଆ ଏକ ଜାତି, ଭାରତୀୟ ଜାତି, ପୁଣି ବିଶ୍ୱ-ମାନବ ଜାତି । ଏହି ତିନୋଟିରୁ କେଉଁଟି ଆମର ଆଦର୍ଶ ? ବ୍ୟକ୍ତି କେଉଁ ବୃହତ୍ତର ଆଦର୍ଶରେ ଅନୁପ୍ରାଣିତ ହେବ ? କିନ୍ତୁ ଗୋଟିଏ କଥା ବୁଝି ଦେଖିବାର ଅଛି । ଅଂଶକୁ ଛାଡ଼ି ବସ୍ତୁ ନାହିଁ, ପରନ୍ତୁ ବସ୍ତୁ ଲକ୍ଷ୍ୟ ହେଲେ, ଅଂଶ ହେୟ ନୁହେଁ ।

ବ୍ୟକ୍ତିଠାରୁ ଆରମ୍ଭ କରି ସ୍ୱଜନ, ପରିବାର, ଗୃହ ଗ୍ରାମରୁ କ୍ରମେ ବିଶ୍ୱ-ବ୍ୟାପୀ ବୃହତ୍ତର ଆଦର୍ଶରେ ଆମକୁ ଅନୁପ୍ରାଣିତ ହେବାକୁ ହେବ । କିନ୍ତୁ ଏହା ବୋଲି କୌଣସିଟିର ଦାୟିତ୍ୱ ଏଡ଼ାଇବା ଅନୁଚିତ । ଅବଶ୍ୟ ଜୀବନରେ ସମୟ ଆସିବ, ଯେତେବେଳେ ଗ୍ରାମ କଲ୍ୟାଣ ପାଇଁ ଗୃହସ୍ୱାର୍ଥ କିମ୍ବା ଦେଶ କଲ୍ୟାଣ ପାଇଁ ଗ୍ରାମସ୍ୱାର୍ଥ ଓ ବିଶ୍ୱକଲ୍ୟାଣ ପାଇଁ ଦେଶ-ସ୍ୱାର୍ଥ ତ୍ୟାଗ କରିବାକୁ ହେବ । କିନ୍ତୁ ସବୁଠି, ସବୁ ସମୟରେ ଓ ସମସ୍ତଙ୍କପାଇଁ ଏହା ପ୍ରଯୋଜ୍ୟ ନୁହେଁ ।

କିନ୍ତୁ ଏହି ସମସ୍ତ ଜଟିଳ ପରିସ୍ଥିତି ମଧ୍ୟରେ ଆମକୁ ଏକ ସଂସ୍କୃତିମୂଳକ ବୃହତ୍ତରକୁ ସର୍ବଦା ଆଖି ଆଗରେ ରଖିବା କୁହେବ । ହୁଏତ ରାଜନୀତି ଦିଗରୁ ଓଡ଼ିଶାରୁ କେତେକ ଅଞ୍ଚଳ ପୃଥକ୍ ହୋଇ ରହିଅଛି । ତଥାପି ସଂସ୍କୃତି ଦିଗରୁ ଆମ୍ଭେମାନେ ସମସ୍ତେ ଏକ ବୃହତ୍ତର ଉତ୍କଳର ଅନ୍ତର୍ଗତ । ବୃହତ୍ତର ଉତ୍କଳର ସାହିତ୍ୟ, ବିଜ୍ଞାନ, କଳା, ସଂସ୍କୃତିରେ ଯେପରି ଓଡ଼ିଶାବାସୀଙ୍କର ଗର୍ବ କରିବାକୁ ଅଛି, ସେହିପରି ଅନ୍ୟ ଓଡ଼ିଆଙ୍କର ଗର୍ବ ଅନୁଭବ କରିବା ଉଚିତ । ସମସ୍ତ ବିରାଟ ଆଦର୍ଶ ମଧ୍ୟରେ ଏହି 'ସଂସ୍କୃତି-ମୂଳକ ବୃହତ୍ତର'କୁ ଭୁଲି ନ ଯିବା ଉଚିତ । ଏହି ସଂସ୍କୃତିମୂଳକ ବୃହତ୍ତର ଭିତରେ ମଧ୍ୟ ଆଉ ଏକ ବୃହତ୍ତର ବିଶ୍ୱ-ବୋଧ ଦିଗ ଅଛି । ବିଶ୍ୱ-ସଂସ୍କୃତି-

ଉଦ୍ୟାନ ନାନା ଜାତୀୟ ସଂସ୍କୃତି-ସୁମନ ଦ୍ୱାରା ପରିଶୋଭିତ । ତେଣୁ ଗୋଟିଏ ପୁଷ୍ପର ଅଙ୍ଗହାନି ହେଲେ ବିଶ୍ୱ-ଉଦ୍ୟାନ ଅସୁନ୍ଦର ହେବ । ତେଣୁ ମାନବ ଶକ୍ତିର ବୈଚିତ୍ର୍ୟ ପ୍ରତିପାଦନ ନିମିତ୍ତ ବିଭିନ୍ନ ଜାତୀୟ ସଂସ୍କୃତିର ବିକାଶ କରିବା ବାଞ୍ଛନୀୟ । ଏହି ଦିଗରୁ ଜାତୀୟ ସଂସ୍କୃତିମୂଳକ ବୃହତ୍ତ୍ୱର ଧାରଣା ମନରେ ଆଣିବା ସମୀଚୀନ ।

ଏହି ବୃହତ୍ତ୍ୱର ସ୍ୱପ୍ନ କେବଳ ବିଜ୍ଞାନ କିମ୍ବା ରାଷ୍ଟ୍ରରେ ଆବଦ୍ଧ ନାହିଁ । ସାହିତ୍ୟ ଓ କଳା ଜଗତରେ ମନୁଷ୍ୟ କ୍ଷୁଦ୍ର ହୋଇ ମଧ୍ୟ ଏକ ବୃହତ୍ତ୍ୱର ସତ୍ତ୍ୱ ସର୍ବଦା ତାର କୃତିରେ ଫୁଟାଇ ଆସିଅଛି ଏବଂ ବୃହତ୍ତ୍ୱର-ସତ୍ତ୍ୱ ଅନୁଭବ କରି ଆସିଛି ।

ଗୋଟିଏ କୁସୁମର ସୁଷମା ବର୍ଣ୍ଣନାରେ, ମଳୟର କ୍ଷଣିକ ହିଲ୍ଲୋଳ କିମ୍ବା ପ୍ରକୃତିର ଏକ କ୍ଷୁଦ୍ର ବିଭବ ବର୍ଣ୍ଣନାରେ ମନୁଷ୍ୟ ଯେଉଁ ସ୍ପନ୍ଦନ ଓ କଳ୍ପନା ଫୁଟାଇ ପାରିଅଛି, ତାହା ସର୍ବଦା ମନୁଷ୍ୟକୁ 'ବୃହତ୍ତ୍ୱର'ର ସମ୍ମୁଖୀନ କରିଅଛି । କେବଳ ପ୍ରକୃତି ନୁହେଁ, ମନୁଷ୍ୟର ସ୍ୱ ଚରିତ୍ର ଚିତ୍ରଣ ବା ବର୍ଣ୍ଣନାରେ ମଧ୍ୟ ଏହି ବୃହତ୍ତ୍ୱର ବିଭବ ସର୍ବଦା ଫୁଟି ଉଠିଅଛି । ଏହାକୁ ଛାଡ଼ି ସାହିତ୍ୟ ଯୁଗଜୟୀ ହୋଇ ରହି ନ ପାରେ । ଶିଶୁର କ୍ରନ୍ଦନରେ ଅନାଦି ମାତୃ ହୃଦୟ ସତତ ବିଗଳିତ ହୁଏ, ଦୁର୍ଭିକ୍ଷ କ୍ଷୁଧାରେ ପୀଡ଼ିତ ହେଲେ ମଣିଷର ହୃଦୟ ଦଗ୍ଧ ହୁଏ । ବିରହ, ମିଳନ, ଭୟ, ସନ୍ଦେହ, ବାତ୍ସଲ୍ୟ, ମାତୃସ୍ନେହ, ପତ୍ନୀ-ପ୍ରେମ ପ୍ରଭୃତି ନାନା ସନାତନ ମାନବିକ ଗୁଣ ବର୍ଣ୍ଣନାରେ ଏହି ବୃହତ୍ତ୍ୱର ସର୍ବଦା ଜାଗ୍ରତ ହୋଇ ରହେ । ବ୍ୟକ୍ତି, କ୍ଷଣିକ ବା କ୍ଷୁଦ୍ରକୁ ଛାଡ଼ି ବୃହତ୍ତ୍ୱର କଳ୍ପନା କରାଯାଏ ନାହିଁ । ଏମାନଙ୍କୁ ନେଇ ବୃହତ୍ତ୍ୱର । ତେଣୁ କ୍ଷୁଦ୍ର ଓ ବୃହତ୍ତ୍ୱର ଲୀଳା ଦର୍ଶନ ଏକ ସୁନ୍ଦର ଦୃଶ୍ୟ ଏବଂ ଏହି ଲୀଳାର ତତ୍ତ୍ୱ ଉପଲବ୍ଧି କରିବା ଅତୀବ ଆନନ୍ଦ-ଦାୟକ । ସୀମା ଯେ ଅସୀମ ହେବାକୁ ସର୍ବଦା ବ୍ୟଗ୍ର । ଏହା ସୃଷ୍ଟିରେ ପ୍ରତି ମୁହୂର୍ତ୍ତରେ ପ୍ରତିଭାତ ।

କିନ୍ତୁ 'ବୃହତ୍ତ୍ୱର'ର ରାଜ୍ୟ ଏତିକିରେ ପରିସମାପ୍ତି ଲାଭ କରି ନାହିଁ । ଆଧ୍ୟାତ୍ମିକ ଜଗତରେ ବୃହତ୍ତ୍ୱର ଆଦର୍ଶ ସର୍ବଦା ମନୁଷ୍ୟ ମନକୁ ଯୁଗ ଯୁଗ ଧରି ଆକର୍ଷଣ କରି ଆସିଅଛି । ଧର୍ମ ନାମ ଶୁଣି ଆଜିକାଲି ହୁଏ ତ ଅନେକେ ବୃଥା ବିରକ୍ତ ହୁଅନ୍ତି, କିନ୍ତୁ ଧର୍ମର ପ୍ରକୃତ ତାତ୍ପର୍ଯ୍ୟ ଓ ଅର୍ଥ ବୁଝିଲେ ଜଣାଯିବ ଯେ, ଏହା ସେହି ଏକ 'ବୃହତ୍ତ୍ୱର'ର ନିୟମାଧୀନ । ମନୁଷ୍ୟ ଯେତେବେଳେ ଏକ ବୃହତ୍ତ୍ୱର ସତ୍ୟ-ସତ୍ତ୍ୱର ଉପଲବ୍ଧି ପାଇଁ ଜୀବନରେ ସାଧନା ଆରମ୍ଭ କରେ, ସେତେବେଳେ ସେ ସମସ୍ତ ଆପାତତଃ କୁଣ୍ଠିତ,

ଅସୁନ୍ଦର ଓ କ୍ଷୁଦ୍ର ମଧ୍ୟରେ ସତ୍ୟ, ଶିବ ଓ ସୁନ୍ଦରର ଅଭିମୁଖୀ ହୁଏ। ସଚ୍ଚିଦାନନ୍ଦହିଁ ବୃହତ୍ତର। ଏହି ଦୃଶ୍ୟମାନ ବୈଚିତ୍ର୍ୟମୟ ବିଭିନ୍ନତା ମଧ୍ୟରେ ଯେ ଏକ ମହତ୍ତ୍ୱ ବୃହତ୍ତର ଅଛି, ଏହା କେବଳ ବୈଜ୍ଞାନିକମାନେ ବୈଜ୍ଞାନିକ ପରୀକ୍ଷାରେ ପରାସ୍ତ ହୋଇ କହୁ ନାହାନ୍ତି। ଦାର୍ଶନିକମାନେ ପ୍ରଜ୍ଞା (Intuition) ବଳରେ ଉପଲବ୍ଧି କରି ଅଛନ୍ତି ଓ ଧର୍ମ ଜଗତରେ ସକଳ ଶାନ୍ତିପ୍ରିୟ ମନୁଷ୍ୟ ସେହି ସତ୍ୟକୁ ନତମସ୍ତକରେ ମାନି ନେଇ ତାହାର ପ୍ରାର୍ଥନା 'ବୃହତ୍ତର'ଙ୍କ ଉଦ୍ଦେଶ୍ୟରେ ଢାଳିଅଛି। 'ନେତି-ନେତି' ଦିଗରୁ ଯୁଦ୍ଧ-ଘୋଷଣା କରି ଯେ ସାରଥି ମନୁଷ୍ୟ ଦେଖାଏ, ତାହା ମଧ୍ୟ ଅଧର୍ମ ନୁହେଁ। ବୃହତ୍ତରର ସନ୍ଧାନ ଦୁଇ ଦିଗରୁ ସମ୍ଭବପର। ଅନୁସନ୍ଧାନ ଓ ଉପଲବ୍ଧି ନାନା ଦିଗ ଦେଇ ହୁଏ। ଏହାର ବିଭିନ୍ନତାରେ ବିଚଳିତ ହେବାର କିଛି ନାହିଁ। ଏକ ଅପରିସୀମ ସର୍ବବ୍ୟାପୀ ମହାନ୍ ଶକ୍ତି ଯେ ସୃଷ୍ଟିର ସର୍ବତ୍ର ପରିବ୍ୟାପ୍ତ ଏବଂ ତାହାଙ୍କର ନିର୍ଦ୍ଦିଷ୍ଟ ନିୟମରେ ଯେ ଏହି ସୃଷ୍ଟି ଶୃଙ୍ଖଳିତ, ଏହାହିଁ 'ବୃହତ୍ତର'ର ନିଦର୍ଶନ। ଏହି ସତ୍ୟ ପଦାରେ ବୁଝାଇ କହିବା ଅପେକ୍ଷା ଉପଲବ୍ଧି କରିବା ବେଶୀ ପ୍ରୟୋଜନ।

କିନ୍ତୁ ବୃହତ୍ତର କଳ୍ପନା କଲାବେଳେ ବୁଝିବା ଉଚିତ ଯେ ମୁଁ କ୍ଷୁଦ୍ର, ସେହି ବୃହତ୍ତରର ଏକ ଅଚ୍ଛେଦ୍ୟ ଅଂଶ। ତେଣୁ ମୁଁ ବୃହତ୍ତର। ଅଗ୍ନିକଣା ମଧ୍ୟ ଅଗ୍ନି। ଏହାହିଁ ହିନ୍ଦୁ ଦର୍ଶନର ପରିକଳ୍ପିତ "ସୋଽହଂ"। ମଣିଷ ଜୀବନର ଏହି ମୂଲ୍ୟ ଓ ସ୍ୱରୂପ ବୁଝିଲେ ବା ଗଭୀର ଭାବରେ ଉପଲବ୍ଧି କଲେ ମନୁଷ୍ୟର ଆଉ ହତୋତ୍ସାହ ହେବାକୁ ମନ ବଳେନା ନାହିଁ। ଆମ୍ଭେମାନେ ସମସ୍ତେ ବୃହତ୍ତରର ଏକ ବିଭକ୍ତ ଅଂଶ ମାତ୍ର। ଏକ ଦିଗରୁ ଆମ୍ଭମାନଙ୍କର ଭେଦ ନାହିଁ। ଏହା ଆମ୍ଭମାନଙ୍କୁ ଏକତା ନିମିତ୍ତ କମ୍ ବଳ ଦିଏ ନାହିଁ। ଶାସକ,ଶାସିତ, ଧନୀ, ନିର୍ଦ୍ଧନ, ଶିଶୁ ଓ ବୃଦ୍ଧ, ଶିକ୍ଷକ ଏବଂ ଛାତ୍ର, ନର ଓ ନାରୀ ସମସ୍ତେ ସେହି 'ବୃହତ୍ତର'ର ଅଂଶ ବିଶେଷ। ସମସ୍ତେ ସେହି 'ବୃହତ୍ତର' ଅଭିମୁଖରେ ଧାବିତ ଏବଂ ସତତ ସୃଷ୍ଟିରେ କ୍ଷୁଦ୍ର ଏହି ବୃହତ୍ତର ସତ୍ତା ଉପଲବ୍ଧି କରିବା ନିମିତ୍ତ ବ୍ୟଗ୍ର; ଏକଥା ଯେଉଁମାନେ ଭୁଲି ଯାଆନ୍ତି ବା ଯେଉଁମାନେ ଏହି ସତ୍ୟ ଉପଲବ୍ଧି କରି ନାହାନ୍ତି, ସେମାନେ କଅଣ କ୍ଷୁଦ୍ର ?

ନା, ଅନ୍ଧାରରେ ଗୁଡ଼ ଥିଲେ ମଧ୍ୟ ତାହା ଗୁଡ଼। ବୃହତ୍ତର ଏହି କ୍ଷୁଦ୍ର ମଧ୍ୟରେ ଅଛି। ଏହାର ସନ୍ଧାନ ଆମ୍ଭମାନଙ୍କୁ କ୍ଷୁଦ୍ର ମଧ୍ୟରେ ନେବାକୁ ହେବ; କ୍ଷୁଦ୍ରକୁ ବୃହତ୍ତର ଆଲୋକରେ ଆଲୋକିତ କରି

ଜଣାଇବାକୁ ହେବ । ତାହାହେଲେ ହୁଏତ ଯେତେବେଳେ ଆମ୍ଭେମାନେ ଅନ୍ତର ପରସ୍ପରକୁ ପ୍ରକୃତ ଭାବରେ ଚିହ୍ନିବାକୁ ସୁଯୋଗ ପାଇବା; ପ୍ରକୃତ ସାହିତ୍ୟ, ବିଜ୍ଞାନ, କଳା, ଧର୍ମ, ଦର୍ଶନ ବା ସଂସ୍କୃତିର ସେବା କରିବା; ପରସ୍ପରଙ୍କୁ ବେଶୀ ସ୍ନେହ, ସହାନୁଭୂତି ଦେଖାଇବା ଏବଂ ପରସ୍ପରକୁ ଯଥାର୍ଥ ସମ୍ମାନ ପ୍ରଦର୍ଶନ କରି ବୃହତ୍ତରର ମର୍ଯ୍ୟାଦା ରଖିବା; କ୍ଷୁଦ୍ର କ୍ଷୁଦ୍ର ଭାବ କରି ମଧ୍ୟ ବୃହତ୍ତର ଆଦର୍ଶ ପଛରେ ଅନୁଧାବନ କରିବା । କ୍ଷୁଦ୍ର ବୃହତ୍ତର ଜ୍ୟୋତିରେ ଉଦ୍ଭାସିତ ହେବ । କିନ୍ତୁ ଏହାଁ ଉଚ୍ଚତର (The Higher) ନୁହେଁ, ଏହା ଯଦି 'ବୃହତ୍ତର'ର ପ୍ରକୃତ ବାଣୀ ନୁହେଁ, ଆଉ ତେବେ କଅଣ ?



# ସୃଷ୍ଟି-ରହସ୍ୟ

ସୃଷ୍ଟି ରହସ୍ୟାଚ୍ଛାଦିତ । ଏହା ଯେପରି ରହସ୍ୟର ଏକ ରୂପକ । ପ୍ରତ୍ୟହ ସୂର୍ଯ୍ୟ ଉଦିତ ହୁଅନ୍ତି ଓ ଅସ୍ତ ଯାଆନ୍ତି । ପ୍ରତ୍ୟହ ଆଲୋକ-ଧାରାରେ ବିଶ୍ୱ ପ୍ଲାବିତ ହୁଏ । ଶ୍ୟାମଳ ତରୁ, ଲତା ଫଳ ପୁଷ୍ପବତୀ ହୁଅନ୍ତି, କୋଟି କୋଟି ତାରା, ନକ୍ଷତ୍ର ନଭସ୍ତଳକୁ ପରିପୂର୍ଣ୍ଣ କରନ୍ତି । ନଦୀର ଜଳଧାରା ଛନ୍ଦ ତୋଳି ବହିଯାଏ । ବିଶ୍ୱ-କ୍ରିୟା ସର୍ବଦା ଗତିଶୀଳ । ଋତୁ ଯେନ ସର୍ବଦା ବୈଚିତ୍ର୍ୟର ବିକାଶ । ପକ୍ଷୀର କୂଜନ, ଶ୍ୟାମ କେଦାର, ଜ୍ୟୋତ୍ସ୍ନାବିଧୌତ ଶୁକ୍ଳପକ୍ଷ ରାତ୍ରି, ହେମନ୍ତର ସୁବର୍ଣ୍ଣ ଶସ୍ୟସମ୍ଭାର, ମୂକ ଶ୍ୟାମବନାବୃତ ଗିରିଶ୍ରେଣୀ ଅବା ଚିର ଝର୍ଝରନିନାଦିତ ନିର୍ଝରିଣୀ— ସର୍ବତ୍ର ସୃଷ୍ଟିର ପର୍ଯ୍ୟାୟ ପରିବ୍ୟାପ୍ତ । କେବଳ ବାହାର ପ୍ରକୃତି ନୁହେଁ, ଅନ୍ତର-ପ୍ରକୃତିରେ ମଧ୍ୟ ବିକାଶ ଲାଗିଅଛି । ସୃଷ୍ଟିର ଏହି ବିକାଶ, ବିଲୟ, ଜନ୍ମ, ମୃତ୍ୟୁ, ଗତି ମଧ୍ୟରେ ମାନବ ଚିର ଭୋଳ ହୋଇ ରହିଅଛି । କେବଳ ଭୋଳ ହୋଇ ନାହିଁ, ତାହାର ପ୍ରାଣରେ ରହସ୍ୟ ନିବିଡ଼ ହୋଇ ଉଠିଛି ଏବଂ ସେ ସେହି ରହସ୍ୟ-ପରଦା ଉଦ୍‌ଘାଟନ କରିବା ପାଇଁ ନାନା ଯୁଗରୁ ନାନା ଭାବରେ ଅଭିଯାନ ଆରମ୍ଭ କରିଅଛି ।

ରହସ୍ୟ ଦୁଇ ଦିଗରୁ ହୋଇ ପାରେ । ଶିଶୁ ଏକ ରହସ୍ୟବୋଧର ଅଧିକାରୀ । କିନ୍ତୁ ଜ୍ଞାନୀ ଶିଶୁ ଦୃଷ୍ଟିରେ ସୃଷ୍ଟି-ପର୍ଯ୍ୟାୟର ଦର୍ଶକ ଓ ବିଚାରକ ହୁଏ ନାହିଁ ।

ମାନବ ଏହି ଯୁଗର ନୁହେଁ । ତାହାର ରହସ୍ୟ ଅଭିଯାନର ଏକ ଦୀର୍ଘ ଇତିହାସ ଅଛି । ଦର୍ଶନ, ଧର୍ମ, ବିଜ୍ଞାନ ଯାହା କୁହ ତାହା ଏହି ରହସ୍ୟର ବାଣୀ ଶୁଣାଏ । ପ୍ରଥମ-ମାନବ ପ୍ରକୃତିର ଶକ୍ତି ଦେଖି ବିସ୍ମିତ, ଭୀତ ଓ ତ୍ରସ୍ତ ହୋଇଥିଲା । ହୁଏତ ପ୍ରାକୃତିକ ବିରାଟ ଶକ୍ତି ଉଦ୍ଦେଶ୍ୟରେ ସେ ସ୍ତବ ଗାଇଥିଲା । ଧର୍ମ-ଜୀବନର ପ୍ରଥମ ପାହାଚ ଏହି ପ୍ରାକୃତିକ ଶକ୍ତି ପୂଜାରେ ନିହିତ । ମାନବ ବର୍ଷା, ବିଦ୍ୟୁତ, ଝଞ୍ଜା ଦେଖି ଭାବିଥିଲା ଯେ, କୌଣସି ବାହାର ଶକ୍ତି ଦ୍ୱାରା ଯେପରି ଏହି ଅଦ୍ଭୁତ ପ୍ରକ୍ରିୟା ସୃଷ୍ଟି-ରଙ୍ଗମଞ୍ଚରେ ଅଭିନୀତ ହେଉଅଛି । ତେଣୁ ସେହି ଶକ୍ତି ସମୂହର ତୁଷ୍ଟି ସାଧନରେହିଁ ମାନବର ମଙ୍ଗଳ । ମନୁଷ୍ୟର ଏହି ପ୍ରାଥମିକ ଧର୍ମ-ଜୀବନ ବିକାଶରେ ମଧ୍ୟ ମନୁଷ୍ୟ ବାହାରେ ଏକ ଦିଗରୁ ସନ୍ତୁଷ୍ଟ ନୁହେ । ଯାହା ଆଖିକୁ ଦେଖାଯାଉ ଅଛି, କାନକୁ ଶୁଣାଯାଉ ଅଛି, ସେତିକିରେ ସନ୍ତୁଷ୍ଟ ହେଲେ ଆଉ

ସୃଷ୍ଟ୍ୟାନୁସନ୍ଧାନର ପ୍ରୟୋଜନ ନାହିଁ । କିନ୍ତୁ ବାହାର ସବୁ ନୁହେଁ, ଆଉ କିଛି ଅଛି ? ଏହି ଚିନ୍ତା ମାନବକୁ ରହସ୍ୟର ସମ୍ମୁଖୀନ କରିଅଛି । ମନୁଷ୍ୟ ମନରେ ଅନାଦି ପ୍ରଶ୍ନ ସଦା ଜାଗ୍ରତ, ସୃଷ୍ଟି କେଉଁଠୁ ଆସିଲା ? କିପରି ଏହା ସୃଷ୍ଟି ହେଲା ? ମାନବ କିଏ ? ଏହାର ପରିଣତି କେଉଁଠି ? ଏହିପରି ନାନା ପ୍ରଶ୍ନ ମାନବ ମନରେ ଜାଗ୍ରତ ହୋଇଅଛି । ଅର୍ଥାତ୍ ମାନବ କେବଳ ଜୀବନ-ଧାରଣ ନ କରି ଖିଆ ପିଇ, ଋଣ କରି, ସନ୍ତୁଷ୍ଟ ନ ହୋଇ ସୃଷ୍ଟି ବିଷୟରେ ଚିନ୍ତା କରିଅଛି । ଏହି ଚିନ୍ତାରୁ ଆମ୍ଭମାନଙ୍କର ସୃଷ୍ଟି ବିଷୟରେ ନାନା ଧାରଣା ହୋଇଅଛି ।

ସୃଷ୍ଟିର ଉତ୍ପତ୍ତି ବିଷୟରେ ନାନା ମତବାଦ ଦେଶରେ ପ୍ରଚଳିତ । କେହି ପ୍ରଳୟରୁ ସୃଷ୍ଟିର ଆରମ୍ଭ ବୋଲି କଳ୍ପନା କରିଅଛନ୍ତି । ଆଲୁଅ ନଥିଲା । ଅନ୍ଧାର ଉପରେ ଅନ୍ଧାର ଘନୀଭୂତ ହୋଇଥିଲା । ପ୍ରଥମ ଜ୍ୟୋତିଃ ପ୍ରକାଶରେ ସୃଷ୍ଟି ଉଦ୍ଭାସିତ ହେଲା । କେବଳ ପ୍ରଥମେ ଶବ୍ଦ ଥିଲା, ଶବ୍ଦ ଭଗବାନଙ୍କଠାରେ ଥିଲା ଏବଂ ଶବ୍ଦହିଁ ଭଗବାନ । ଏହି ଭଗବାନହିଁ ସକଳ ସୃଷ୍ଟିର ମୂଳାଧାର ।

ବୈଜ୍ଞାନିକମାନେ ପୁଣି ଅନ୍ୟ ଭାବରେ ଏହି ସତ୍ୟର ସମ୍ମୁଖୀନ ହୋଇ ଅଛନ୍ତି । ଏକ ବଡ଼ ନୀହାରିକା କ୍ରମେ ଶୀତଳ ହୋଇ ସୌର-ଜଗତର ବିଭିନ୍ନ ଗ୍ରହ ଓ ପୃଥିବୀରେ ପରିଣତ ହୋଇଅଛି କିମ୍ବା ଏକ ବଡ଼ ନକ୍ଷତ୍ର ମହାବ୍ୟୋମରେ ଗତି କଲାବେଳେ ଅନ୍ୟ ଏକ ନକ୍ଷତ୍ରର ଅତି ସମୀପବର୍ତ୍ତୀ ହେବାରୁ ପରସ୍ପରର ଆକର୍ଷଣରେ ସାନ ନକ୍ଷତ୍ର ନାନା ଖଣ୍ଡରେ ବିଭକ୍ତ ହୋଇଗଲା । ତାହା ସୌର-ଜଗତର ଗ୍ରହ, ପୃଥିବୀ । କିନ୍ତୁ ସୃଷ୍ଟିର ଆରମ୍ଭ ଖୋଜି ଏକ ମୀମାଂସିତ ସତ୍ୟ ମିଳି ନାହିଁ । ହେଲେହେଁ ବିବର୍ତ୍ତନହିଁ ସୃଷ୍ଟି । ବିବର୍ତ୍ତନ ପ୍ରତ୍ୟହ ଆମ ସମ୍ମୁଖରେ ଲାଗିଅଛି । ବସ୍ତୁର ଜ୍ଞାନ ବସ୍ତୁର ବାହାରେ ନାହିଁ । ବସ୍ତୁର ଅଭ୍ୟନ୍ତରରୁହିଁ ବସ୍ତୁ ବିଷୟକ ସତ୍ୟ ଉପଲବ୍ଧ ହେବ ।

ଆଜି ସକଳ ଜଡ଼ ସୃଷ୍ଟି ବୈଦ୍ୟୁତିକ ତରଙ୍ଗରେ ପରିଣତ । ସକଳ ସୃଷ୍ଟି ଅଣବିବାଦରେ ପରିଣତ । ପାଣି, ପବନ, କୋଠା, ଗଛ, ମନୁଷ୍ୟ, ପଶୁ ସକଳ କେତେଗୁଡ଼ିଏ ଅଣୁର ସମଷ୍ଟି ମାତ୍ର । ପୁଣି ଏବେ ବିଜ୍ଞାନରେ ଅନ୍ୟ ଏକ ଚିନ୍ତାଧାରାର ଆରମ୍ଭ ହୋଇଅଛି । କ୍ରମେ ବୈଜ୍ଞାନିକ ଚେତନ, ଅଚେତନର ପାର୍ଥକ୍ୟ ଉଠାଇ ଦେବାକୁ ପ୍ରସ୍ତୁତ । ସୃଷ୍ଟିରେ ପ୍ରକୃତ ଜଡ଼ ବସ୍ତୁ ନାହିଁ ।

ପରୀକ୍ଷା ଦ୍ୱାରା ଦେଖା ଯାଉଅଛି ଯେ ଚେତନ ବସ୍ତୁ ଯେପରି ବାହାରର ଆକର୍ଷଣରେ ଆକର୍ଷିତ ବା ପ୍ରଭାବିତ, ସେହିପରି ଜଡ଼ ନୁହେଁ । ସେ ଯାହା ହେଉ ଗୋଟିଏ ପ୍ରଶ୍ନ ବୈଜ୍ଞାନିକମାନଙ୍କୁ ପଚାରିବାକୁ ଇଚ୍ଛା ହୁଏ । ଯଦି ପୃଥିବୀ ଜଡ଼ମୟ ଏବଂ ଜଡ଼ ସୃଷ୍ଟିରୁ ଚେତନର ବିକାଶ, ତେବେ ଜଡ଼ର ଚେତନ କିପରି ସମ୍ଭବପର ହେଲା ? ବୀଜର ପରିଣତ ବୃକ୍ଷ ହେଲେ, ବୀଜ ମଧ୍ୟରେ ବୃକ୍ଷ ନିହିତ । ତାହା ନହେଲେ ବୃକ୍ଷ ଆସିବ କେଉଁଠୁ ? କାର୍ଯ୍ୟ କାରଣ ମଧ୍ୟରେ ନିହିତ । ଯାହା ଆଦରେ ନାହିଁ, ତାହା ମଧ୍ୟରେ ନାହିଁ, ଶେଷରେ ନାହିଁ ? ତେଣୁ ଜୀବନ କିପରି ଜଡ଼ରୁ ବିକଶିତ ହେଲା ? ହଁ, ବିବର୍ତ୍ତନ ମୁଁ ମାନୁଅଛି । ହେଲେହେଁ ବିବର୍ତ୍ତନ ପୂର୍ବରୁ ଆମକୁ ଏମିତି କିଛି ଗୋଟିଏ ସତ୍ତା ମାନିବାକୁ ହେବ ଯାହା ଚେତନ, ଯାହା ସକଳ ସୃଷ୍ଟିର ମୂଳାଧାର । ନୋହିଲେ ଆମ୍ଭମାନଙ୍କର ସକଳ ତର୍କ ଧୂଳିସାତ୍ ହୋଇଯିବ । ଦେଶ-କାଳ ଅବଛିନ୍ନ ନାମ-ରୂପ-ଜଗତର ଆବିର୍ଭାବ ବହୁଯୁଗରୁ । ହୁଏତ ମନୁଷ୍ୟ ତାହାର ଇତିହାସ ଜାଣିଛି କେତେ ହଜାର ବର୍ଷ ପୂର୍ବରୁ । ଅବାହ-ମାନ କାଳରୁ ଏହି ସୃଷ୍ଟି ରହିଅଛି । କେତେ ବିବର୍ତ୍ତନ ଏହାର ବକ୍ଷରେ ଗଲଣି । ଏହି ନୀଳ ଆକାଶ ତଳେ, ଏହି ନୀଳ ସମୁଦ୍ର କୋଳରେ, ଏହି ଧୂଳି ଧୂସରିତ ଧରଣୀ ବକ୍ଷରେ କେତେ ସୃଷ୍ଟି-ଲୀଳା ଖେଳିଗଲଣି । ସମଗ୍ର ମହାବ୍ୟୋମ, କେତେ କୋଟି କୋଟି ତାରା, ନୀହାରିକା, ଗ୍ରହ, ନକ୍ଷତ୍ର, ସୌରଜଗତରେ ପୂର୍ଣ୍ଣ । ତହିଁରେ ଏହି ଆମ ଧରଣୀ ସାମାନ୍ୟ ବିନ୍ଦୁଟିଏ ମାତ୍ର । ତେବେ ଜୀବନ ଆଉ କେଉଁଠାରେ ଅଛି କି ନାହିଁ, ଆମ୍ଭେମାନେ ଜାଣି ନାହୁଁ । ଆମ୍ଭେମାନେ ମାତ୍ର ଜାଣୁ ଯେ ପୃଥିବୀରେ ଜୀବନ ଅଛି । ଜୀବନ ପୁଣି ପୃଥିବୀ ଅଭ୍ୟନ୍ତରରେ ତିନି ମାଇଲ ଠାରୁ ବେଶୀ ଗଭୀରରେ କିମ୍ବା ଉପରେ ପାଞ୍ଚ ମାଇଲ ଠାରୁ ବେଶୀ ଉଚ୍ଚରେ ସମ୍ଭବପର ନୁହେ । ଏହି ବିରାଟ ମହାଶୂନ୍ୟ—ମହାବ୍ୟୋମ ପ୍ରାୟ ଶୂନ୍ୟ ଓ ଜୀବନହୀନ !

ତଥାପି ଏହି କ୍ଷୁଦ୍ର ଧରଣୀରେ ବିଜ୍ଞାନ ଅନୁସାରେ ହଠାତ୍ ଉଦ୍ଭିଦ, ପ୍ରାଣୀ ଜନ୍ମ ହୋଇ ନ ଥିଲେ । କ୍ରମେ ବିବର୍ତ୍ତନ ଦ୍ୱାରା ଏହାର ବିକାଶ, ବୈଚିତ୍ର୍ୟର ବୃଦ୍ଧି । ଏହି ବିକାଶ ବନ୍ଦ ହୋଇ ନାହିଁ । ବିକାଶ ସଙ୍ଗେ ସଙ୍ଗେ ବିଲୟ । ପୁଣି ନୂତନ ବିକାଶ । ଏହିପରି ବହୁସଂଖ୍ୟକ ପ୍ରାଣୀ ଜଗତରୁ ଗଲେଣି । ସେମାନଙ୍କ ବଂଶର ଆଉ ଉତ୍ତରାଧିକାରୀ ମଧ୍ୟ ନାହାନ୍ତି । ପ୍ରଥମେ ମତ୍ସ୍ୟଯୁଗ । ଅବଶ୍ୟ ପ୍ରଥମେ ତୃଣ, ତୃଣଗୁଳ୍ମ ସୃଷ୍ଟି ହୋଇ ନଥିଲେ । କିନ୍ତୁ ଜୀବନର ପ୍ରଥମ ଆରମ୍ଭ ଜଳରେ । କ୍ଷୁଦ୍ର ଜଳକୀଟ ଠାରୁ କ୍ରମେ ଗଛ ।

ତା ପରେ କ୍ଷୁଦ୍ର କ୍ଷୁଦ୍ର ଘାସ, ବୃଦାର ଆବିର୍ଭାବ । ତାହା ସବୁ ଅଳ କୋଇଲାରେ ପରିଣତ । କିନ୍ତୁ ସକଳ ଜୀବନ୍ତ ବସ୍ତୁ, ଉଦ୍ଭିଦ୍ ଓ ପ୍ରାଣୀର ପ୍ରଥମ ଅବସ୍ଥା ଜଳରେ । ତା ପରେ ସରୀସୃପ ଯୁଗ । ହୁଏତ ଏହି ଯୁଗରେ ଦୁଇ ହଜାର ଲକ୍ଷ ବର୍ଷ କଟି ଯାଇଥିବ । ଏହା ପୂର୍ବରୁ ହୁଏତ ଚଉଦ ହଜାର ଲକ୍ଷ ବର୍ଷ କଟି ଯାଇଥିଲ, ଏହି ସରୀସୃପ ଯୁଗ ଆଜଠାରୁ ଅଠର ଲକ୍ଷ ବର୍ଷ ପୂର୍ବରୁ ଶେଷ ହୋଇଥିଲା । ତାହା ପରେ ପକ୍ଷୀ ଓ ସ୍ତନ୍ୟପାୟୀ ଜୀବଙ୍କର ଉତ୍ପତ୍ତି ହେଲା । ଏହିପରି ବିଶ୍ୱ ବୈଚିତ୍ର୍ୟର ଗତି । ଏହା ଅସୀମ ଓ ସର୍ବଦା ଗତିଶୀଳ । ଏହା ଅନାଦି ଓ ଅଶେଷ । ଇତିହାସ ପୁଣି କେବେ ପୁନରାବୃତ୍ତି ହେଉ ନାହିଁ । ବିଶ୍ୱରେ ବୈଚିତ୍ର୍ୟ ମଧ୍ୟରେ ସମତା କାହିଁ ?

ତା ପରେ ମାଙ୍କଡ଼ ଏବଂ ମନୁଷ୍ୟର ଆରମ୍ଭ । ପଚିଶ ହୁଏତ ତିରିଶ ଲକ୍ଷ ବର୍ଷ ପୂର୍ବେ ପ୍ରଥମେ ମାଙ୍କଡ଼ ପୃଥିବୀକୁ ଆସିଥିଲେ । ପ୍ରଥମ ମନୁଷ୍ୟ ମଧ୍ୟ ସେପରି ବିକଶିତ ନୁହେଁ । ତାପରେ ସପ୍ତମ ଆଦମ-ମାନବର ଆବିର୍ଭାବ । ରୋଡ଼େସିଆ, ଅଫ୍ରିକା, ଅସିଆର ଆଦିମ ମାନବ ମନୁଷ୍ୟର ପ୍ରଥମ ବଂଶଧର ।

ଏହି ଯେଉଁ ବିବର୍ତ୍ତନ-ପର୍ଯ୍ୟାୟର ଏକ ସଂକ୍ଷିପ୍ତ ବିବରଣୀ ଦେଲି ଏହା ବିଜ୍ଞାନର । ଏହା କେତେ ଦୂର ସତ୍ୟ, ମିଥ୍ୟା ସେ ବିଷୟରେ ମୁଁ କିଛି କହି ପାରିବି ନାହିଁ । ମନୁଷ୍ୟ ନାନା ଅନୁମାନ କରୁଅଛି । ଏହା କେତେ ଦୂର ସୃଷ୍ଟି-ରହସ୍ୟକୁ ଉଦ୍‌ଘାଟିତ କରୁଛି, ତାହା ମନୁଷ୍ୟହିଁ ବିଚାର କରିବେ । ପୁଣି ବିଜ୍ଞାନର ଏହି ବିବର୍ତ୍ତନ-ଶବ୍ଦ ସଙ୍ଗେ ସଙ୍ଗେ ହିନ୍ଦୁ କଳ୍ପିତ "ଦଶ-ଅବତାର" ମଧ୍ୟ ତୁଳନୀୟ ।

କିନ୍ତୁ ଏହି ବିବର୍ତ୍ତନ ସତ୍ୟ ହେଉ ବା ନ ହେଉ, ଦର୍ଶନର ବାଣୀ ଅନ୍ୟ କେଉଁଠାରେ ବିଜ୍ଞାନଠାରୁ ଗମ୍ଭୀରତମ ପ୍ରଦେଶକୁ ଯାଏ । ଆମ୍ଭେମାନେ ବିଜ୍ଞାନରେ ଶୁଣୁ ଜଡ଼ରୁ ଜୀବନର ବାଣୀ । କିନ୍ତୁ ଦର୍ଶନ ଭୂମିରେ ଠିକ୍ ବିପରୀତ । ଏକ ବିଶ୍ୱଚେତନ ହିଁ ବ୍ୟକ୍ତିଗତ ଚେତନର ନିୟାମକ । ଯାହା ସ୍ୱତଃ ଚେତନ, ତାହା ଚେତନା ଦେବାକୁ କ୍ଷମ । ଅଦ୍ୱୈତ ଦର୍ଶନ ଏହି ସୃଷ୍ଟି-ରହସ୍ୟର ଏକ ମୀମାଂସା ଦେଇଅଛି ।

ସୃଷ୍ଟି ମହା ଚେତନମୟ । ଏହା ବ୍ରହ୍ମ । ସକଳ ବ୍ରହ୍ମ, ଏହାହିଁ ସତ୍ୟ । ତେବେ ସୃଷ୍ଟିର ଏହି ବୈଚିତ୍ର୍ୟ, ବିଭିନ୍ନତାର ଆରମ୍ଭ କେଉଁଠୁ ? ଏହା ମାୟାରୁ । ମାୟା ଅର୍ଥ ମିଥ୍ୟା ନୁହେଁ, ମହା ରହସ୍ୟ, ଅବୁଝା । ଅଦ୍ୱୈତବାଦୀ ଏକ ଦୃଷ୍ଟାନ୍ତ ଦିଏ—ତାହା ସର୍ପ-ରଜ୍ଜୁ-ଭ୍ରମ । ଅସୀମ ଅଦ୍ୱୈତ ସୀମାରେ ପରିଣତ ହେଲି ଭଳି ଦେଖାଯାଏ । ପ୍ରକୃତରେ କିନ୍ତୁ ଅସୀମହିଁ ଅସୀମ । ସେ ସର୍ବଦା

ପ୍ରତୀୟତେ । ମୁଁ ସେହି ଅସୀମର ଏକ ଅଂଶ । ଅର୍ଥାତ୍ ବ୍ୟକ୍ତିଗତ ଚୈତନ୍ୟ ବିଶ୍ୱ-ଚୈତନ୍ୟର ଅଂଶ । ବରଂ, ପାର୍ଥକ୍ୟ କିଛି ନାହିଁ । ପ୍ରଶ୍ନ ଉଠିବ, ଏହି ଜ୍ଞାନ କିଅଣ ମନୁଷ୍ୟ ପାଇ ପାରେ ? ହଁ, ମନୁଷ୍ୟ ପ୍ରଜ୍ଞାଭୂମିରେ ବିଶ୍ୱ-ଚୈତନ୍ୟ ଉପଲବ୍ଧି କରିପାରେ । ସେତେବେଳେ ମନୁଷ୍ୟର ଦେଶ, କାଳ ବା ନାମ-ରୂପ, କର୍ତ୍ତା-କର୍ମ ଜ୍ଞାନ ନ ଥାଏ । ଜ୍ଞାନ ଓ ଜ୍ଞାତା ଏକ । ଏହା ମନୁଷ୍ୟକଳ୍ପିତ ହେତୁ ରହସ୍ୟାନୁଭୂତ । ଏହାହିଁ ସୃଷ୍ଟିର ଶେଷ ରହସ୍ୟ ।

ତେବେ ସୀମା, ଜଗତ ସୃଷ୍ଟି ? ଏହା କଅଣ ମରୀଚିକା, ମିଥ୍ୟା ? ନା, ଏହା ସ୍ୱପ୍ନବାଜି ନୁହେଁ । ସୀମାରେ ଥିବା ଯାଏ, ଅର୍ଥାତ୍ ନାମ-ରୂପ ଜଗତରେ ଥିବା ଯାଏ ଏହି ନାମ ରୂପ ଦେଶକାଳ ତଳେ ସତ୍ୟ । ଏହା କିନ୍ତୁ ଅଦ୍ୱୈତ ସତ୍ୟ ନୁହେଁ । ଅଦ୍ୱୈତ-ବାଦ ଏକ ଅଭୟ ବାଣୀ । ଏହା ମନୁଷ୍ୟକୁ ଜନ୍ମ, ମୃତ୍ୟୁ, କ୍ଷୟ, ବୃଦ୍ଧି, ଭୟରୁ ଉଦ୍ଧାର କରେ । ବ୍ୟକ୍ତିଗତ ଚୈତନ୍ୟ ବିଶ୍ୱ-ଚୈତନ୍ୟ । ମୁଁ ବିଶ୍ୱ-ବ୍ୟାପୀ ସତ୍ତା । ତେବେ ଆଉ ଭୟ, ଦୁଃଖ କାହିଁକି ? ମନୁଷ୍ୟ କ୍ଷୁଦ୍ର କ୍ଷୁଦ୍ର ଭୟରୁ ରକ୍ଷା ପାଏ । ସେ ବିଶାଳ, ବିରାଟ ବିଶ୍ୱମୟ ହୋଇ ଉଠେ ।

କିନ୍ତୁ ଭାରତୀୟ ଦର୍ଶନରେ ଅଦ୍ୱୈତ ସଙ୍ଗେ ସଙ୍ଗେ ବିଶିଷ୍ଟାଦ୍ୱୈତ ଓ ଦ୍ୱୈତବାଦ ଅଛି । ଏହି ଦୁଇଟି ବାଦର ପରିପୂର୍ତ୍ତି ଅଦ୍ୱୈତ ବାଦରେ ହେଲେହେଁ ଏହା ମଧ୍ୟ ପ୍ରଯୋଜନୀୟ ।

ବିଶିଷ୍ଟାଦ୍ୱୈତରେ ବ୍ୟକ୍ତିଗତ ଆତ୍ମା, ପ୍ରକୃତି ଓ ଈଶ୍ୱରବିଶ୍ୱାସ ସ୍ଥିର । କିନ୍ତୁ ଏହା ପ୍ରତ୍ୟେକଠାରୁ ପ୍ରତ୍ୟେକ ପୃଥକ୍ ।

ଗୋଟିଏ ଉଦାହରଣ ଦିଆଯାଇ ପାରେ । ସୂର୍ଯ୍ୟ ଆକାଶରେ, କିନ୍ତୁ ତାହାଙ୍କ ଛାୟା ଘଟ ମଧ୍ୟରେ, ଜଳାଧାରରେ, ପୁଷ୍କରିଣୀରେ, କୂପ, ଝରଣା, ନଦୀରେ । ଏକ ସୂର୍ଯ୍ୟ ପୁଣି ଘଟସୂର୍ଯ୍ୟ, ନଦୀସୂର୍ଯ୍ୟ, କୂପସୂର୍ଯ୍ୟ, ଝରଣା ସୂର୍ଯ୍ୟରେ ବିଭକ୍ତ । ବିଶିଷ୍ଟାଦ୍ୱୈତ ମତରେ ଏକ ସୂର୍ଯ୍ୟ ଓ ଏହି ଅସଂଖ୍ୟ ଛାୟା ସୂର୍ଯ୍ୟ ଅନାଦି କାଳ ପାଇଁ ବିଭକ୍ତ । ପ୍ରକୃତି ମଧ୍ୟ । ପୁଣି ଦ୍ୱୈତବାଦୀଙ୍କର ଏକ ବ୍ୟକ୍ତିଗତ ଈଶ୍ୱରରେ ବିଶ୍ୱାସ କରନ୍ତି । ଏହାହିଁ ସଗୁଣ ବ୍ରହ୍ମ । ଈଶ୍ୱର ସ୍ରଷ୍ଟା, ରକ୍ଷକ ଓ ସଂହାରକ । ବିଶିଷ୍ଟାଦ୍ୱୈତରେ ବ୍ୟକ୍ତିଗତ ଆତ୍ମା ଚିରଦିନ ପାଇଁ ରହିବେ । ପ୍ରକୃତି ଓ ଈଶ୍ୱର ମଧ୍ୟ ଚିରକାଳ ସଙ୍ଗୋପେ ରହିବେ । ଈଶ୍ୱର ମଧ୍ୟ ଆତ୍ମାର ଅଂଶ । ପ୍ରଳୟରେ ପ୍ରକୃତି ସଂକୁଚିତ ମାତ୍ର ହୋଇଯାଏ । କିନ୍ତୁ ସମୟ ପାଇଁ ଅପେକ୍ଷା କଲା ପରେ, ପୁଣି ସୃଷ୍ଟିର ବିକାଶ ସମ୍ଭବପର ହୁଏ ।

କର୍ମବୀଜ ସର୍ବଦା ଅମୃତ । ଆତ୍ମା ସୁକର୍ମଦ୍ୱାରା ବିକଶିତ ହୁଏ, ମନ୍ଦକର୍ମଦ୍ୱାରା ସଂକୁଚିତ ହୁଏ । ବ୍ୟକ୍ତିଗତ-ଆତ୍ମାର ଏହି ସଂଗ୍ରାମର ସମାପ୍ତି ହୁଏ ମୋକ୍ଷ ବା ମୁକ୍ତିରେ ।

ବୌଦ୍ଧ ଦର୍ଶନରେ 'କ୍ଷଣିକ-ବିଜ୍ଞାନ-ବାଦ'ର ପୁଣି ବିସ୍ତାର । ସୃଷ୍ଟି ଧାରା ପରିବର୍ତ୍ତନଶୀଳ । ନଦୀର ଦୁଇ କୂଳ ପରିବର୍ତ୍ତିତ ହେଉଅଛି । ତେବେ ନଦୀ କେଉଁଠି ? ସେହିପରି ମନ । କର୍ମହିଁ ସୃଷ୍ଟିର ନିୟାମକ । ବୌଦ୍ଧ ଦର୍ଶନ ସୃଷ୍ଟିର ମୌଳିକ ତତ୍ତ୍ୱରେ ବ୍ୟାପୃତ ହୋଇ ନାହିଁ । ବୁଦ୍ଧଧର୍ମ ଏକ ଶ୍ରେଷ୍ଠ ନୈତିକ-ଧର୍ମ । ସୁନୀତି ପାଳନହିଁ ଆନନ୍ଦ । କର୍ମ-ଚ୍ଛେଦରେ ହିଁ ନିର୍ବାଣ । କର୍ମ ମନୁଷ୍ୟର ନିୟାମକ । କର୍ମ କଲେ ଫଳ ମିଳିବ । ବୌଦ୍ଧ ଏହି ତତ୍ତ୍ୱରେ ସନ୍ତୁଷ୍ଟ । ସୃଷ୍ଟି-ରହସ୍ୟ ଚିନ୍ତାରେ ବୁଦ୍ଧ ବୃଥା ସମୟ ନଷ୍ଟ କରିବାକୁ ଉପଦେଶ ଦେଉ ନ ଥିଲେ । ତେଣୁ ବୌଦ୍ଧ ଦର୍ଶନରେ 'ଆତ୍ମ-ଚିନ୍ତା' ସେତେ ପରିସ୍ଫୁଟ ନୁହେଁ ।

ଏହା ବ୍ୟତୀତ ଭାରତୀୟ ହିନ୍ଦୁ ଦର୍ଶନରେ 'ସୃଷ୍ଟିବିକାଶର କ୍ରମର କ୍ରମ-ଚିନ୍ତା କରାଯାଇଛି, ତାହା ବିଚାର କରାଯାଇପାରେ । କପିଳ ଭାରତୀୟ ମନୋବିଜ୍ଞାନର ପିତା । କପିଳ ଭାରତର ନୁହନ୍ତି, ପୃଥିବୀର ଜଣେ ଶ୍ରେଷ୍ଠ ଦାର୍ଶନିକ । ସାଂଖ୍ୟର ମନୋବିଜ୍ଞାନ ପ୍ରାୟ ସମସ୍ତ ହିନ୍ଦୁ ଦର୍ଶନ ମୁଖ୍ୟଭାବରେ ଗ୍ରହଣ କରିଅଛି ।

ଶକ୍ତି ସୃଷ୍ଟିରେ ତରଙ୍ଗାୟିତ । ବିଜ୍ଞାନ ଏକ ବିଶ୍ୱବ୍ୟାପି ଶକ୍ତି ତରଙ୍ଗରେ ସମସ୍ତଙ୍କୁ ପରିଣତ ମାନ କରୁଅଛି । ଏହାହିଁ ପ୍ରାଣ ।

ପ୍ରାଣହିଁ ସ୍ପନ୍ଦନ । ସୃଷ୍ଟିର ଅନନ୍ତ ଶକ୍ତି ସଙ୍କୁଚିତ ଅବସ୍ଥାରେ କୁଆଡ଼େ ଯାଏ ? ଜଳରେ ତରଙ୍ଗର ଶକ୍ତି ନିହିତ । ତରଙ୍ଗରେ ଯେଉଁ ଶକ୍ତି ବିକଶିତ, ଜଳ ମଧ୍ୟରେ ତାହା ସଙ୍କୁଚିତ ହୋଇ ମାତ୍ର ରହେ । ସୃଷ୍ଟି ଅର୍ଥ ଏହି ବିକାଶପ୍ରସାରଣ ମାତ୍ର । ସମସ୍ତ ପ୍ରାଣ ମଧ୍ୟରେ ନିହିତ । ପ୍ରାଣ ପ୍ରଥମରୁ ହୁଏତ ସ୍ପନ୍ଦନଶକ୍ୟ ବୋଲି ଜଣାପଡ଼େ — କ୍ରମେ ଆକାଶ ଓ ପ୍ରାଣର ସଂଯୋଗରେ ପ୍ରକୃତିର ପ୍ରସାରଣ ହୁଏ । ପ୍ରାଥମିକ ବିକାଶ ତେଣୁ ଆକାଶ । ଆକାଶ ପ୍ରାଣର ସ୍ପନ୍ଦନରେ ସ୍ପନ୍ଦିତ ହୁଏ । ଆମ୍ଭେମାନେ କହୁଁ,

"ଯଦିଦଂ କିଂ ଚ ଜଗତ୍ ସର୍ବଂ ପ୍ରାଣ ଏଜତି ନିଃସୃତମ୍ ।"

ଏହି ସୃଷ୍ଟି-ପର୍ଯ୍ୟାୟ ପର୍ଯ୍ୟାଲୋଚନାରେ କିନ୍ତୁ ଗୋଟିଏ ବାଣୀ ନିହିତ । ସୃଷ୍ଟିର ମୂଳର ଧାରା । ସୃଷ୍ଟିର ସଚଳତା ମିଳନ କେନ୍ଦ୍ର ଆକାଶ ଓ ପ୍ରାଣ । ଏହି ଦୁଇଟି [illegible] ପରିଭାଷା [illegible] ସଂଯୋଜିତ ? ନା । ଆମ୍ଭମାନେ

ତା ପରେ ଏକ ମହତ୍‌'ର କଳ୍ପନା କରନ୍ତି । ମହତ୍‌ ମଧ୍ୟରେ ଆକାଶ ଓ ପ୍ରାଣ ମିଳିତ । ମନ ଏହି 'ମହତ୍‌'ର ଏକ କ୍ଷୁଦ୍ର ଅଂଶ ମାତ୍ର । ବ୍ୟଷ୍ଟିର ମନ କ୍ଷୁଦ୍ର ମସ୍ତିଷ୍କରେ ଆବଦ୍ଧ । ପୁଣି ଯାହା ବ୍ୟଷ୍ଟି ମଧ୍ୟରେ ତାହା ସମଷ୍ଟି ମଧ୍ୟରେ ପ୍ରତିଭାତ । ତେଣୁ ଆତ୍ମମାନେ ପିଣ୍ଡ ଓ ବ୍ରହ୍ମାଣ୍ଡରେ ଏକ ତୁଳନା ବାଢ଼ନ୍ତି । ଏହି ମନ କ'ଣ ? ସାଂଖ୍ୟ ମତରେ ମନ ମଧ୍ୟ ବସ୍ତୁ । ଏହା ମାତ୍ର ସୂକ୍ଷ୍ମ । ଶରୀର ସ୍ଥୂଳ ପୁଣି ଏହାର ଅଭ୍ୟନ୍ତରରେ ସୂକ୍ଷ୍ମ ଶରୀର । କିନ୍ତୁ ଏହା ଆତ୍ମା ନୁହେଁ । ବୌଦ୍ଧ ଦର୍ଶନରେ "ମନକୁ" ସେମାନେ ସବୁ ବୋଲି ଭାବିଥିଲେ । କିନ୍ତୁ ମନ ସବୁ ନୁହେଁ । ଆତ୍ମାହିଁ ଅନ୍ତର-ମାନବ । ଅନ୍ତଃକରଣ ଏହାର ମାନସିକ ଯନ୍ତ୍ର । ବାହାର ବସ୍ତୁ ଇନ୍ଦ୍ରିୟର କୌଣସି କ୍ଷମତା ନାହିଁ । ମନୁଷ୍ୟ କେବଳ ବାହାର ଆଖି, କାନ, ନାସିକାର ବ୍ୟବହାରରେ ଜ୍ଞାନ ପାଇ ନ ପାରେ । ପ୍ରକୃତ ଜ୍ଞାନ ଉପଲବ୍ଧି ମନୁଷ୍ୟର ମନରେ, ଅର୍ଥାତ୍‌ ଅଭ୍ୟନ୍ତରରେ । ଇନ୍ଦ୍ରିୟର ସୂକ୍ଷ୍ମ ଶକ୍ତି ମନ, ବୁଦ୍ଧି, ଚିତ୍ତ ପ୍ରଭୃତିକୁ ନେଇ ଅନ୍ତଃକରଣ । ଫ୍ରଏଡ୍‌ର ମନୋବିଜ୍ଞାନ ସମ୍ପର୍କରେ ଅନେକ କଥା କୁହାଯାଇ ପାରିବ । ତାହାର କ୍ଷେତ୍ର ଏ ନୁହେଁ ।

ସୃଷ୍ଟି-ରହସ୍ୟ ଏପରି ମନୁଷ୍ୟର ମନକୁ ଆଚ୍ଛନ୍ନ କରିଅଛି । ବୈଜ୍ଞାନିକ, ଦାର୍ଶନିକ, ସେମାନଙ୍କ ଶକ୍ତି ଅନୁଯାୟୀ ଏହାର ଏକ ମୀମାଂସା ଦେବାକୁ ଚେଷ୍ଟା କରିଅଛନ୍ତି । ଏ ସମ୍ପର୍କରେ ଆଜ ଦୁଇଟି 'ବାଦ' ଉଥାକହିବ — ଗୋଟିଏ 'ମାୟା-ବାଦ' ଓ ଅନ୍ୟଟି 'ଲୀଳା-ବାଦ' । ଅନେକେ କହନ୍ତି ସଂସାର ମାୟା । ଏହାର ଅର୍ଥ କ'ଣ ? ମାୟା ଅର୍ଥ ମିଥ୍ୟା ନୁହେଁ, ମାୟା ଅର୍ଥ ରହସ୍ୟ । ସଂସାରର ସ୍ୱପ୍ରକୃତ ଗୂଢ଼, ରହସ୍ୟମୟ ବୋଲି ଏହା ମାୟା । ବ୍ରହ୍ମ ନିଷ୍କ୍ରିୟ, ସଂପର୍କଶୂନ୍ୟ, ଅସୀମ ଓ ପୂର୍ଣ୍ଣ । ପୁଣି ତାହା କାହିଁକି ସୀମାରେ ବ୍ୟକ୍ତ ହୁଏ ବା ବ୍ୟକ୍ତ ହେଲା ଭଳି ଦେଖାଯାଏ ? ଏଥିପାଇଁ ଏହା ମାୟା । ମନୁଷ୍ୟ କେତେକ ଗୁଡ଼ିଏ ପ୍ରଶ୍ନର ଶେଷ ସମାଧାନ କରି ନ ପାରି, ଏହାକୁ ମାୟା କହି ଅଛି । ସର୍ପ ଭଳି ଦୌଡ଼ ଦେଖାଯାଏ । କାହିଁକି ? ଏହା ମାୟା । ଜଳ କାହିଁକି ତରଙ୍ଗ ଭଳି ଦେଖାଯାଏ; ଏହା ମାୟା । ମନୁଷ୍ୟ ଜାଣେ ସେ ମୃତ୍ୟୁ, ବ୍ୟାଧି ଜରା ଅଧୀନ; ତଥାପି ସେ ସଂସାର-ଆସକ୍ତ କାହିଁକି ? ଏହା ମାୟା । ଦେଶ-କାଳ ମଧ୍ୟରେ ନାମ-ରୂପ ଜଗତରେ ଥିବା ଯାଏ ମାୟା ଅଛି । ଏହା ସ୍ୱାଭାବିକ । ଏହି ବନ୍ଧ-ମାୟାକୁ ଭାଙ୍ଗିବା କଠିନ । ଅନେକଙ୍କ ବା ଜ୍ଞାନହିଁ ମାୟା ଉଚ୍ଛେଦନ କରେ । ଏଥିପାଇଁ ବିଜ୍ଞାନ ବା ପ୍ରଜ୍ଞା-ମୂଳକ ଜ୍ଞାନର ପ୍ରୟୋଜନ । ଶାସ୍ତ୍ରୀୟ ଜ୍ଞାନ ବା ଗୁରୁ ଉପଦେଶ ମାତ୍ର ବାଟ ବତାଇ ଦେଇ ପାରେ, ଏହା ମନୁଷ୍ୟକୁ ନେଇ ସଂଶୟର ସମାଧାନ କରି ନ ପାରେ ।

କିନ୍ତୁ ମନୁଷ୍ୟ ଏହି ଦର୍ଶନ, ମାୟା, ବିଜ୍ଞାନ ମଧ୍ୟରେ ବାଟ ନ ଭୁଲି ଏକ ଆନନ୍ଦର ଅଧିକାରୀ ହୋଇ ପାରେ—ତାହା ଲୀଳା । ଗଡ଼ଜାତ ବଣ ବାଟରେ ଆସିଲାବେଳେ ମୁଁ ବଣରେ ଗଛର ମୂଲ୍ୟ, କାଠର ଗୁଣ ଚିନ୍ତା କରୁ ନଥିଲି ।

ମୁଁ ଦେଖୁଥିଲି ଦିଗନ୍ତ ବିସ୍ତାରିତ ଉଜ୍ଜ୍ୱଳ ପ୍ରକୃତିର ଶ୍ୟାମବନ-ଶୋଭା । ମୋର ଏହି ଶ୍ୟାମଳତା ଦର୍ଶନରେହିଁ 'ମାନସିକ ଭୋଜର' ଆୟୋଜନ ହେଉଥିଲା । ମୁଁ ଗୀତ ଗାଉଥିଲି । 'ଲୀଳା-ବାଦ' ମନରେ ଗମ୍ଭୀର ଭାବରେ ପୋଷଣ କରିବାକୁ ହେଲେ ଟିକିଏ ଗମ୍ଭୀର ଚିନ୍ତା ପ୍ରୟୋଜନ । ଜୀବନ ଏକ କୌଶଳ । ମନୁଷ୍ୟ ଆନନ୍ଦ ଉପଭୋଗ କରିବାକୁ ଚାହିଁଲେ, ଏହି କୌଶଳ ଶିକ୍ଷା କରିବା ଉଚିତ । 'ଲୀଳା-ବାଦ' ମାନସିକ ଶାନ୍ତି, ସୁଖ ଦେବାକୁ ସକ୍ଷମ । ଲୀଳା-ମୁଗ୍ଧ ହେବା ପୂର୍ବରୁ ବିଶ୍ୱର ଲୀଳାକୁ ଉପଲବ୍ଧି କରିବା କଥା । ଦିନ ରାତି, ସୁଖ ଦୁଃଖ, ଜନ୍ମ ମୃତ୍ୟୁ, ବିକାଶ ବିନାଶହିଁ ସୃଷ୍ଟି । କେତେ ଆସୁଛନ୍ତି, ଆସିବେ, ଯାଉଛନ୍ତି ଓ ଗଲେଣି । ଯିବା, ଆସିବା, ରହିବାହିଁ ସୃଷ୍ଟି । ସବୁଠି ଲୀଳାର ବିକାଶ । ଫୁଲ ଫୁଟେ, ତାରା ଉଠେ, ପାଣିର ଝରଣା ଝର ଝର ହୋଇ ବହିଯାଏ, ନୀଳ ଆକାଶ ଶିର ଉପରେ ହସେ, ଜଳଦ-ସମ୍ଭାରରେ ଆକାଶ ଅବଗୁଣ୍ଠିତ ହୁଏ, ଶ୍ୟାମ ଶସ୍ୟରେ ଅବନୀ ଆଚ୍ଛାଦିତ ହୁଏ, ଶିଶୁ କ୍ରମେ ଯୌବନ, ଜରା ଦେଇ ମୃତ୍ୟୁଗାମୀ ହୁଏ । ଅବିରତ ଯାତ୍ରା, ଗତି ଲାଗିଅଛି । ମନୁଷ୍ୟ ଯାତ୍ରୀ । ଜୀବନ ଉତ୍ସବ । ସୃଷ୍ଟି ଏକ ଗତି । ଅତୀତ ବର୍ତ୍ତମାନରେ ପୁଣି ବର୍ତ୍ତମାନ ଭବିଷ୍ୟତରେ ପରିଣତ । ବିଶ୍ୱ ପରିଣତିହିଁ ଲୀଳା ସୃଜୁଏ । ସକଳ ଜୀବନ-ଲୀଳାର ମହାନାଟକ ପ୍ରଦର୍ଶିତ । ମନୁଷ୍ୟ ନଟ । ନର, ନାରୀ ଅଭିନେତା । ସଂସାର ଏକ ବିପୁଳ ରଙ୍ଗମଞ୍ଚ । ସୃଷ୍ଟିର ଏହି କ୍ରମଗତିଶୀଳ, ବିରାଟ ବିକାଶ-ସ୍ରୋତରେ ମନୁଷ୍ୟ ନିଜର ଚିତ୍ତକୁ ଭସାଇ ଦେଇ ପାରିଲେ, ସେ ଲୀଳା-ବାଦର ସ୍ୱାଦ ପାଇ ପାରେ । ନାଟକ ଯେଉଁମାନେ ଅଭିନୟ କରନ୍ତି, ସେ ବେଶୀ ସୁଖ ପାଆନ୍ତି ନା ଯେ ଦେଖେ ସେ ବେଶୀ ସୁଖ ପାଏ ? ମୁକ୍ତ ଦର୍ଶକ ପ୍ରକୃତ ଆନନ୍ଦ ପାଏ । ଆମ୍ଭେମାନେ ସୃଷ୍ଟି-ରହସ୍ୟର ମୁକ୍ତ ଦର୍ଶକ ହେବାର ସ୍ୱାଦ ପାଇ ନାହୁଁ । ସେ ସ୍ୱାଦ ଯେ ଥରେ ପାଇଅଛି, ସେ କେବେ ଏହା ଭୁଲିବ ନାହିଁ । ଏହାହିଁ ଲୀଳାବାଦ । ଏକ ଅନନ୍ତ, ଅନାଦି, ଅଶେଷ ବିକାଶ ଲାଗିଅଛି; ଏହାହିଁ ସୃଷ୍ଟି । ଶ୍ୟାମଳ ଦୂର୍ବା-ପ୍ରାନ୍ତରରେ ଶୟନ କରି ଗୋଧୂଳିର ସ୍ନିଗ୍ଧ ନୀଳ ଆକାଶକୁ ଦେଖ, କିପରି ରଙ୍ଗଭରଣୀ କ୍ରମେ ଲିଭି ଆସୁଛି ! ଏହାହିଁ ଲୀଳା !

ପୁଣି ଏହି ରହସ୍ୟର ଅନ୍ୟ ଏକ ଉଦ୍‌ଘାଟନ ଆଧୁନିକ ସାହିତ୍ୟରେ ଶୁଣୁ । ସାହିତ୍ୟ ସୃଷ୍ଟି ସହିତ ଗଭୀର ଭାବରେ ସଂପୃକ୍ତ । ସୃଷ୍ଟି ଓ ମାନବ ଅନ୍ତରର ପ୍ରତିବିମ୍ବ ସାହିତ୍ୟ, କଳାରେ । ଆମ୍ଭେମାନେ ଧର୍ମ, ଦର୍ଶନ ଓ ବିଜ୍ଞାନର ସୃଷ୍ଟି-ରହସ୍ୟ ବାଣୀ ଜାଣିଲେଣି । ସାହିତ୍ୟରେ ଏହି ରହସ୍ୟ ବାଣୀ ପୁଣି ଏକ ନୂତନ ବୈଶିଷ୍ଟ୍ୟର ପ୍ରଭାବ । କବୀନ୍ଦ୍ର ମଦ୍‌'ବିଳ'ଠାରୁ ଆରମ୍ଭ କରି ରବୀନ୍ଦ୍ରନାଥଙ୍କ ରହସ୍ୟ-ବାଦ କିମ୍ବା ରୂପକ-ନାଟ୍ୟ ନାଟକ ଯାଏ ଏହାର ଗତି । କେତେବେଳେ କବି ସୃଷ୍ଟି କ୍ଷେତ୍ରରେ ଅସୀମ-କଲ୍ୟାଣ ଦୃଷ୍ଟି ଆବୃତ୍ତ ହୋଇଛନ୍ତି; କେତେବେଳେ ସେ ଉକ୍ତିର, ଆସ୍ୱାଦନଙ୍କ ଭଳି ଅସ୍ଥ-ଷଷ୍ଠ ହସଇ ଗାଇଛନ୍ତି—'ସୃଷ୍ଟି ଅନ୍ତରମୟ ହେବା କେବଳି 'ଅନ୍ତରମୟ', 'ଲୀଳାମୟୀ' 'କୌତୁକମୟ'ର ଲୀଳା । ଏହା ଅସୀମ, ଅରୂପର ସୀମା ଓ ରୂପ ମଧ୍ୟରେ ବିଚରଣର ଖେଳ । କବି ମିଟସ୍‌ଙ୍କ ମାନସ-ରାଜ୍ୟ (The land of Heart's desire)ରେ କିମ୍ବା ମେଟରଲିଙ୍କଙ୍କ ନୀଳ-ଚଢ଼େଇ (Blue bird)ରେ; ରବୀନ୍ଦ୍ରନାଥଙ୍କ ଡାକଘର, ରକ୍ତକରବୀରେ ଏହି ରହସ୍ୟର ବାଣୀ ଉଚ୍ଚାରେ । କବି ମିଟସ୍ 'ଆନନ୍ଦ' ଖୋଜନ୍ତି, ମେଟରଲିଙ୍କ 'ସୌନ୍ଦର୍ଯ୍ୟ' ଖୋଜିବେ ପ୍ରୟାସର ।

"'କଳ୍ପକ ବର୍ଣ୍ଣ ଶୀ' କେଶିଲ ବେଳେ ମୁଁ କେତେଏବ ବଞ୍ଚ-ସଂଗୀତ ମନରେ ପ୍ରୟାସର ହୋଇଥିଲ । ସତ୍ୟ ବସ୍ତୁ-ବ୍ୟାପୀ । ସତ୍ୟ ଉପଲବ୍ଧି ଅର୍ଥ ବସ୍ତୁ-ଉପଲବ୍ଧି । ଏହା ନାନା ପଥ ଦେଇ ହୋଇପାରେ । ବେଉ ଛନ୍ଦରେ, କେହି ରଙ୍ଗ ଓ ରେଖାରେ, କେହି ଆନନ୍ଦରେ, ସୌନ୍ଦର୍ଯ୍ୟରେ ଏହି ବସ୍ତୁ-ସତ୍ତାର ସମ୍ମୁଖୀନ ହୋଇଅଛନ୍ତି । ସତ୍ୟ ମନୁଷ୍ୟ ମନରୁ କ୍ଷୁଦ୍ରତାର ମୋହ ଭାଙ୍ଗିଦିଏ । ଯେଉଁଠି ଅଦ୍ୱୈତବାଦୀ ବୁଦ୍ଧର ବସ୍ତୁ-ବ୍ୟାପକତ୍ୱରେ ପ୍ରଜ୍ଞାନନ୍ଦ ପାଏ, ସେଠାରେ ଶିଳ୍ପୀ-କବି ରୂପ, ସ୍ୱର ବା ଛନ୍ଦ, ଆନନ୍ଦ ବା ସୌନ୍ଦର୍ଯ୍ୟ ମଧ୍ୟ ଦେଇ ସେହି ବସ୍ତୁ-ସତ୍ତାର ଗଭୀର ଉପଲବ୍ଧି କରନ୍ତି । ସେତେବେଳେ ଚିତ୍ତ ଆପ୍ଲୁତ ହୋଇ ଗାଇ ଉଠେ—

ଜୀବନ ଲଂଘଇ ରହସ୍ୟ-ବାରିଧି
ମହା ମଧୁମୟ ମନଚିତ୍ର ।

ଏହାହିଁ ସୃଷ୍ଟି-ରହସ୍ୟ ।

ଏଥିରୁ ଆସ ଜୀବନ-ଦର୍ଶନ ସମ୍ପୃକ୍ତ । ମନୁଷ୍ୟ ଚିର ଆନନ୍ଦାନ୍ୱେଷୀ । ମନୁଷ୍ୟ ଜଗତରେ ବ୍ୟଷ୍ଟି, ପରିବେଶରେ ବେଷ୍ଟିତ, ସାମାଜିକତାର ବନ୍ଧନରେ ବନ୍ଧା

ମୃତ୍ୟୁରେ ପରାଜିତ ହେବାର ପ୍ରୟୋଜନ ଅନୁଭବ ନ କରୁ । ଏହା ଦେଖିଲି ପ୍ରାଣ ପାଷାଣ ନୁହେଁ ।

ଯେଉଁମାନେ ଅମୃତ-ସନ୍ଧାନୀ ସେମାନେ 'ଅମୃତ' ତନଅରୁ ପାଇ ପାରନ୍ତି । ଅମୃତ କର୍ମର ସାଧନା ଦ୍ୱାରା, ଅମୃତ ଅନୁଧ୍ୟାନ ଉପଲବ୍ଧି ଦ୍ୱାରା ଏବଂ ଅନ୍ୟ ଭାବରେ ଦେଶ, ଜାତି ବା ମାନବ ଗୋଷ୍ଠୀର ଗୋଷ୍ଠୀଗତ ଅମୃତ ଧାରଣା ଦ୍ୱାରା ।

ଜୀବନରେ ଦୁଃଖ, ଦୈନ୍ୟ ଆସିବ । ପ୍ରେମିକା ପ୍ରତାରଣା କରିବ । ସମାଜରେ ଦରିଦ୍ର ଜ୍ଞାନୀ ବ୍ୟକ୍ତିର ମଧ୍ୟ ଅନାଦର ହେବ । ବାଧା, ବିଘ୍ନ ପଦେପଦେ । ଜୀବନ ଏକ ଶ୍ୟାମଳ-ଦୂର୍ବା-ମଣ୍ଡିତ କିମ୍ବା ସୁରଭି-ଗୋଲାପପୁଷ୍ପ-ପରିଶୋଭିତ କୋମଳ ପଥ ନୁହେଁ । ସେଥିପାଇଁ ହତାଶ ନାହିଁ । ମନୁଷ୍ୟ ଅଦମ୍ୟ ଅମୃତ କର୍ମୀ । କର୍ମ ଆମ୍ଭମାନଙ୍କର । ସୃଷ୍ଟି-ରହସ୍ୟକୁ ଆମ୍ଭେମାନେ ବୁଝିବା, ସୃଷ୍ଟିର ସମ୍ମୁଖୀନ ହେବା ଯୋଦ୍ଧା ଭାବରେ, ବୀର ଭାବରେ । କ୍ରନ୍ଦନ କାପୁରୁଷର । ଯଦି ମୁଁ ଏକ ଅମୃତ ଶକ୍ତି; ଯାହା ପାଣିରେ ବୁଡ଼ିବ ନାହିଁ, ନିଆଁରେ ପୋଡ଼ିବ ନାହିଁ, ଅସ୍ତ୍ରରେ ଛିଡ଼ିବ ନାହିଁ, ପବନରେ ଉଡ଼ିଯିବ ନାହିଁ, ତେବେ ସାମାନ୍ୟ ସାଂସାରିକ ବିପଦ, ବାଧାବିଘ୍ନରେ ମୁଁ କାହିଁକି ବିଚଳିତ ହେବି ? ମୁଁ ଯଦି ବିଶ୍ୱ-ବ୍ୟାପୀ ଏକ ଅମୃତ ସତ୍ତା, ମୋର ବିରହ କେଉଁଠି ? ବିଚ୍ଛେଦ କେଉଁଠି ? ମୃତ୍ୟୁ ଅଳୀକ । ଏହା ଦେହର ।

ଆମ୍ଭେମାନେ ଜାଣୁ, ବିଶ୍ୱର ଶକ୍ତି ତାର ସମାନ । ଏହାର କ୍ଷୟ, ବୃଦ୍ଧି ନାହିଁ । ପରିବର୍ତ୍ତନ ସମ୍ଭବପର; କିନ୍ତୁ ବିନାଶ, ବିଲୟ ନୁହେଁ । ଆମ୍ଭେମାନେ ବିରାଟ, ବିଶାଳ ହୋଇ କ୍ଷୁଦ୍ର ଅହଂକାରରେ ସନ୍ତୁଷ୍ଟ ବୋଲି ଆମ୍ଭମାନଙ୍କର ଯନ୍ତ୍ରଣା, ଦୁଃଖ । ଯେଉଁମାନେ ଏହି ରହସ୍ୟ ବୁଝିଅଛନ୍ତି ସେମାନେ ଜୀବନ୍ମୁକ୍ତ । ବିପଦର ସମ୍ମୁଖୀନ ହୁଅ । ବିପଦରୁ ତ୍ରାଣ ପାଇବା ପାଇଁ ବିବେକ ଅନୁଯାୟୀ କର୍ମ କର; ବାକିତକ ସମୟ ବଂଶୀ ବଜାଇ ଗୀତ ଗାଅ । ହିଂସା, ଦ୍ୱେଷ, ପରଶ୍ରୀକାତରତା ପାଇଁ ଆଉ ସ୍ଥାନ କାହିଁ ? ଏହାହିଁ ଅହିଂସା । ଏହାହିଁ ସତ୍ୟର ସ୍ୱରୂପ । ମୋର ଅନ୍ତର ଓ ବାହାରେ ସବୁଠି ଆନନ୍ଦ । ଏହା ମୃତ୍ୟୁ ନୁହେଁ, ଜୀବନ; ଆଶଙ୍କା ନୁହେଁ ଆଶା; ଏହା ସୃଷ୍ଟି-ରହସ୍ୟ ।

———

# ଆମ ଜୀବନ

ଜୀବନ ମୂଲ୍ୟବାନ୍ । ମଣିଷ ଜୀବନ ଦୁର୍ଲଭ । ସ୍ୱର୍ଗ ଲୋକର ଦନୁ ନର, ନାଗ ଅମୃତ ଭାବରେ ଜୀବନଧାରଣ କରୁଅଛନ୍ତି; ଦନୁ ନର, ନାଗ ପୃଥିବୀରେ ଧୂଳି, ଗୋଡ଼ ଭଳି ପଦଦଳିତ, ତଥାପି ମଣିଷ ଜୀବନର ଦୁର୍ଲଭତା ବାଣୀ ଭୁଲି ନ ଯିବା ଉଚିତ । ମଣିଷ ଜୀବନ ପୂର୍ବରୁ ଆମ୍ଭମାନଙ୍କର କି ଜୀବନ ଥିଲା ଜଣା ନାହିଁ, ପୁଣି ଏହି ଜୀବନର ଶେଷ ପରେ କି ଜୀବନ ଆମ୍ଭେମାନେ ପାଇବା; ଆମ୍ଭେମାନେ ଆଜିହୁଁ ଅବଗତ ନୋହୁଁ । ତେଣୁ ଏହା ଦୁର୍ଲଭ । ଏହି ଦୁର୍ଲଭତାର ଆଉ ଗୋଟିଏ ଦିଗ ଅଛି; ଏତେ କହନ୍ତି ମଣିଷର "ଯୋଗାଙ୍ଗ", ଅର୍ଥାତ୍ ମଣିଷ ଇଚ୍ଛା କଲେ ଏହି ଜୀବନରେ ସୃଷ୍ଟିର ଶ୍ରେଷ୍ଠ ସତ୍ୟ ଉପଲବ୍ଧି କରିପାରେ । ଯଦି ବିଶ୍ୱର ସ୍ୱର୍ଗ, ମର୍ତ୍ତ୍ୟ ସହିତ କେହି ମିଳନ ରଚନା କରେ, ତେବେ ସେ ଏହି ମନୁଷ୍ୟ ।

ମନୁଷ୍ୟ ବିଶ୍ୱକର୍ମା । ସୃଷ୍ଟି ପର୍ଯ୍ୟାୟରେ ସେ ଏପରି ଏକ ସ୍ଥାନ ଅଧିକାର କରିଅଛି ଯେ, ଯାହା ତାହାକୁ ଶ୍ରେଷ୍ଠ-ଆସନ ଚିରକାଳ ପାଇଁ ଦେଇଅଛି । ତେଣୁ ମାନବ ସୃଷ୍ଟି ସମ୍ଭୋଗ କରିବାକୁ ସକ୍ଷମ ହୋଇଅଛି ।

ଆତ୍ମ ସମ୍ପର୍କରେ ଗୋଟିଏ ଦୃଷ୍ଟାନ୍ତ ଦିଆଯାଏ । 'ମୁଁ' ନାହିଁ; ଏପରି ଦୁନିଆରେ କେହି ଭାବେ ନାହିଁ । ଏହି ଆତ୍ମ-ସତ୍ତାରୁହିଁ 'ମୁଁ' ଭିନ୍ନ ସ୍ଥିତି ବା ଆତ୍ମସତ୍ତାର ସ୍ଥିତି ସୁପ୍ରମାଣିତ । ତେଣୁ 'ମୋର ଜୀବନ ନାହିଁ' ଏପରି ଚିନ୍ତା କେହି ଚିନ୍ତା କରୁ ନ ଥିବେ, କହିବା ଦୂରର କଥା । ଯେଉଁ ବ୍ୟକ୍ତିମାନେ ଆମ ସମାଜର ନର୍ଦ୍ଦମାର କୀଟଠାରୁ ଅଧିକ କଷ୍ଟକର ଜୀବନ ଯାପନ କରୁଛନ୍ତି, ସେମାନେ ମଧ୍ୟ ସେମାନଙ୍କ ଜୀବନ ଉପରୁ ବିଶ୍ୱାସ ହରାଇ ନାହାନ୍ତି । ତେଣୁ 'ଆତ୍ମ-ଜୀବନ' ବିଷୟ ଅଳ୍ପ ଚିନ୍ତା ବା ଆଲୋଚନା କଲେ ଏଥିରେ ଚମତ୍କୃତ ହେବାର କିଛି ନାହିଁ ବୋଧହୁଏ ?

କିନ୍ତୁ ଚମତ୍କୃତ ହେବାର ଗୋଟିଏ କାରଣ ଅଛି । ଜୀବନର ଏହି ନମଲାଗି ଗୁଚ୍ଛା ସମସ୍ତେ ଉପଲବ୍ଧି କରିଛନ୍ତି ତ ?

ଜୀବନର ପ୍ରକୃତ ମୂଲ୍ୟ ନ ବୁଝିଲେ, ଜୀବନ ବିଷୟରେ ଠିକ୍ ଧାରଣା କରିବା କଠିନ । ଜଗତ ପରିବର୍ତ୍ତନ ସୂତ୍ରଏ । ମୂଲ୍ୟ ଚିରଦିନ ପାଇଁ ନିର୍ଦ୍ଧାରିତ ନୁହେଁ । ଯେଉଁ ବସ୍ତୁ ଆଜି ମୂଲ୍ୟବାନ, କାଲି ତାହା ସସ୍ତା । ଯାହା ସସ୍ତା ଥିଲା, ଆଜି ତାହା ମହଙ୍ଗା । ବସ୍ତୁର ମୂଲ୍ୟ ଚିରଦିନ ପାଇଁ

ଏକାବେଳକେ ସ୍ଥିରୀକୃତ ନୁହେଁ। ତେବେହେଁ ମୂଲ୍ୟ ଅଛି। ଜୀବନର ଏହିପରି ଗୋଟିଏ ମୂଲ୍ୟ ନିରୂପଣ ପାଇଁ ନିର୍ଦ୍ଧାରିତ। ଏହାର ପରିବର୍ତ୍ତନ, ପରିବର୍ଦ୍ଧନ ଅସମ୍ଭବ। ସମାଜରେ, ହୋଇପାରେ ଧନୀ ନିର୍ଦ୍ଧନଠାରୁ ବେଶୀ ସୁଖ ପାଉଅଛି; ଅଜ୍ଞାନ ଧନୀ ଜ୍ଞାନବାନ୍ ଦରିଦ୍ର ବ୍ୟକ୍ତିଠାରୁ ବେଶୀ ପୂଜା ପାଉଅଛି। ଶିକ୍ଷିତ ଅଶିକ୍ଷିତ ଅପେକ୍ଷା ବେଶୀ ଜୀବନ-ସୁଖ ଉପଭୋଗ କରୁଅଛି; ଏହି ସମସ୍ତ ଆପାତତଃ ବୈଷମ୍ୟ; ବାସ୍ତବତା ମଧ୍ୟରେ କିନ୍ତୁ ଜୀବନର ମୂଲ୍ୟ ସ୍ଥିରୀକୃତ। ଧନୀର ପାଦରେ ପୀଡ଼ା ହେଲେ ଯେପରି ତା ଦେହରେ କଷ୍ଟ ଜାତ ହୁଏ, ଦରିଦ୍ରର ସେପରି ହୁଏ। ଧନୀ ଯେପରି ପ୍ରବଳଶାଳୀର ଅଧୀନ ହୁଏ, ଦରିଦ୍ର ମଧ୍ୟ। ଧନୀ ଯେପରି ମର୍ତ୍ତ୍ୟ-ପ୍ରେମରେ ବଶୀଭୂତ ହୁଏ, ଦରିଦ୍ର ମଧ୍ୟ। ଏହି ଆପାତତଃ ଧନବୈଷମ୍ୟ ଅନ୍ତର ମାନବକୁ ପ୍ରଭାବିତ କରିବାକୁ ଅକ୍ଷମ। ଧନ ବାହାରର। ମାନବର ଅନୁଭୂତ ରାଜ୍ୟରେ ଧନୀ ନିର୍ଦ୍ଧନ ସମାନ। ଶିକ୍ଷିତ ପ୍ରକୃତିର ଆନନ୍ଦ ଉପଭୋଗ କରି ଶିଖିଅଛନ୍ତି। ଉଷାର ସ୍ନିଗ୍ଧ ସୁନ୍ଦର-ସୁନୀଳ ଆକାଶ ତାଙ୍କୁ ଭୋଳ କରେ। ବିହଙ୍ଗର ମଧୁର କାକଳୀ ଶ୍ରବଣରେ ସେ ତରଳି ଯାଆନ୍ତି। ପୁଷ୍ପ-ଉଦ୍ୟାନର ସୁରଭିତ ମଳୟ ସମୀରଣରେ ସେମାନେ ଆମୋଦିତ ହୁଅନ୍ତି; ଶୁକ୍ଳପକ୍ଷ ପୂର୍ଣ୍ଣିମା ଚନ୍ଦ୍ର ତାଙ୍କୁ ଅନ୍ୟ ରାଜ୍ୟକୁ ନିଏ; ତେବେହେଁ ଅଶିକ୍ଷିତ ମଧ୍ୟ ଏହି ପ୍ରାକୃତିକ-ପ୍ରଭୃତିକୁ ମୂଲ୍ୟ ଏଡ଼ାଇ ପାରନ୍ତି ନାହିଁ। ଯନସ୍ୱର୍ଣ୍ଣର ଅଦମ ହୋ (କୋହ୍ଲ) ମାନଙ୍କ ଜୀବନକୁ ଘନିଷ୍ଠଭାବେ ଲକ୍ଷ୍ୟ କଲେ ଏ କଥା ସ୍ପଷ୍ଟ ହୋଇପାରେ। ଧର୍ମ ଇତିହାସର ଏ ସେହି ବାଣୀ। ଅଦ୍ୱୈତ-ବାଦୀ ସୃଷ୍ଟିର ଶ୍ରେଷ୍ଠ ଦର୍ଶନ ବା ସତ୍ୟ ପ୍ରାଣରେ ଗଭୀର ଭାବରେ ଉପଲବ୍ଧ କରନ୍ତି। ପୁଣି ଏହି ଆମ ଗ୍ରହଅତର 'ହୋ' ନର, ନାଗ୍ଗା ପଥର ଖଣ୍ଡେ, ଗଛଟିଏ ଦେଖା ହେବ, ସ୍ନାନ କରି ହୋଇ ସନ୍ତୁଷ୍ଟ। ଏହା ପରିମାଣରେ ତାରତମ୍ୟ ସୃଷ୍ଟିହୋଇପାରେ; କିନ୍ତୁ ଏହା ପ୍ରକାରଭେଦ ନୁହେଁ। ମଣିଷ ଜୀବନ ତେଣୁ ଏକ ଅଖଣ୍ଡ ଜୀବନ। ଏହି ଜୀବନର ଯୁଗ ଯୁଗ ଧରି ଗତି ହୋଇ ଆସୁଅଛି। ସୃଷ୍ଟିରେ କେବଳ ପରିବର୍ତ୍ତନ ସୃଷ୍ଟି-ସୌନ୍ଦର୍ଯ୍ୟର ଅଦଳ ନାହିଁ। ମାନବ ଜୀବନର ମଧ୍ୟ ପ୍ରତ୍ୟହ ପରିବର୍ତ୍ତନ ହେଉଅଛି।

ଆମ ଗ୍ରହଅତର 'ହୋ' ନର ନାଗ୍ଗା ଓ ଆମ ଶିକ୍ଷିତ ଜୀବନର ଏକ ତୁଳନାତ୍ମକ ପଠନ କଲେ, ଆମ୍ଭେମାନେ ଏହା ସହଜରେ ଜାଣିପାରିବା। ମନୁଷ୍ୟ ସର୍ବଦା ଜନ୍ମ ମାତ୍ରେ ଅଗ୍ରଜନ। ଜନ୍ମ ସଂଖ୍ୟା ପରିଚୟ; ସୁଖ ସଂଗ ଦୁଃଖ, ମିଳନ ସମ୍ବନ୍ଧ ବିରହ, ବିଚ୍ଛେଦ ସଂସାରରେ ଧାରାବାହି।

କିନ୍ତୁ ଏହି ଉତ୍‌ଥାନ, ପତନ ମଧ୍ୟରେ ମନୁଷ୍ୟ ଆଗକୁ ମାଡ଼ି ଚାଲିଅଛି। ଏହି ସମ୍ପର୍କରେ ଗୋଟିଏ ଜୀବନ-କଥା ମନେ ପଡ଼େ।

ମନୁଷ୍ୟ ଜୀବନ ଏକ; ଏହା ପୁଣି ଦୁଇ। ବ୍ୟକ୍ତି ଜୀବନ ସହିତ ଗୋଷ୍ଠୀ-ଜୀବନ ସମ୍ପୃକ୍ତ। କେଉଁ ଜୀବନ ଶ୍ରେଷ୍ଠ? ମଣିଷ ଯେ ଅନନ୍ତ ମୁକ୍ତି-ଅଭିଯାନରେ ଅଗ୍ରସର ହେଉଅଛି, ବ୍ୟକ୍ତିଭାବରେ ନା ଗୋଷ୍ଠୀଭାବରେ? ଇତିହାସ ଆମକୁ କାହାର ଜୟ-ଗୀତ ଶୁଣାଏ? ଇତିହାସ ସମ୍ୟକ୍ ମାନବର୍କ-ଜଗତର ବିକଶିତ ଚିନ୍ତାଧାରା ହେବା ଉଚିତ। ଇତିହାସରେ ବିଶ୍ୱ-ବାଣୀ ଝଂକୃତ ହେବା ବାଞ୍ଛନୀୟ। ଖଣ୍ଡ ଚିନ୍ତା କିମ୍ବା ଛିପାରେ; ଖଣ୍ଡ କିପରି ଅଖଣ୍ଡ ହେଉଅଛି; ତାହାର ସ୍ପଷ୍ଟ ସୂଚନା ଇତିହାସର ପ୍ରତିଫଳିତ ହେବା ଲୋଡ଼ା; ନୋହିଲେ ଏକତ୍ୱର ବାଣୀ ବା ଗୋଷ୍ଠୀର ମଙ୍ଗଳ ଚିନ୍ତା ମନୁଷ୍ୟ କାହୁଁ ଶିଖିବ? ମୁଁ ଯଦି କହେ ଖରସୁଆଁର କ କିମ୍ବା ଖ ମିଶ୍ର ଦୁଷ୍ଟ, ଅଭଦ୍ର; ତେବେ କ ଓ ଖ ସିନା ମୋ ଉପରେ ବିରକ୍ତ ହେବେ; କିନ୍ତୁ ମୁଁ ଯଦି କହେଁ ଯେ ଖରସୁଆଁର ଅଧିବାସୀମାନେ ପରିବାର, ସହୃଦୟତା ଜାଣନ୍ତି ନାହିଁ; ଖରସୁଆଁର ଲୋକମାନେ ଭଦ୍ରତା ଜାଣନ୍ତି ନାହିଁ; ତେବେ ଖରସୁଆଁର ସମସ୍ତ ଲୋକେ ମୋ ଉପରେ ବିରକ୍ତ ହୋଇ ଉଠିବେ। କାହିଁକି? କାରଣ ମଣିଷ ଭିତରେ ଦୁଇଟି ଜୀବନ ଅଛି। ଗୋଟିଏ ବ୍ୟକ୍ତିଗତ, ଅନ୍ୟଟି ସମଷ୍ଟିଗତ ଜୀବନ। ବ୍ୟକ୍ତିକୁ ନେଇ ସମଷ୍ଟି। କେତେଲେହେଁ ବ୍ୟକ୍ତିର ଏକ ମିଳିତ ଜୀବନ କେବଳ ଗୋଷ୍ଠୀ ଜୀବନ ନୁହେଁ; ଆଉ କିଛି। ବ୍ୟକ୍ତିର ଉନ୍ନତି ସଙ୍ଗେ ସଙ୍ଗେ ଏହି ସମଷ୍ଟିଗତ ଜୀବନର ଉନ୍ନତି ବିଧାନ ବାଞ୍ଛନୀୟ। ମନୁଷ୍ୟ ପ୍ରଥମେ ତ ବ୍ୟକ୍ତିଗତ ଜୀବନ ଗଠନ ବିଷୟରେ ଚିନ୍ତା କରନ୍ତି। ସ୍ୱାର୍ଥ କିଏ ନ ଖୋଜେ? କିନ୍ତୁ ଆତ୍ମ-ବିକାଶ ପାଇଁ ଆତ୍ମ-ବିଶ୍ଳେଷଣ ଓ ଆତ୍ମ-ପରୀକ୍ଷା ଲୋଡ଼ା। ଦୋଷ ଥାଇପାରେ। ଆମମାନଙ୍କ ବ୍ୟକ୍ତିଗତ ଜୀବନର ନାନା ତ୍ରୁଟି, ଅଭାବ, ଅସୁବିଧା ଅଛି, ପୁଣି ଏହାହିଁ ଜାତୀୟ ଜୀବନରେ କଳଙ୍କରୂପେ ଫୁଟିଉଠେ।

କେବଳ ଏତିକି ନୁହେଁ; ବ୍ୟକ୍ତି କ୍ଷଣସ୍ଥାୟୀ। ଅନ୍ୟ ପକ୍ଷରେ ଗୋଷ୍ଠୀ ଏକ ଅନନ୍ତ ପ୍ରବାହର ସୂଚନା ଦିଏ। ମୁଁ ଅଖଣ୍ଡ-ଆନନ୍ଦରେ ଭୋଳେର। କ୍ଷୁଦ୍ରର ସୁଖ ସସୀମ; ଏହା କ୍ଷଣିକ। କିନ୍ତୁ ଗୋଷ୍ଠୀ ଅନନ୍ୟ-ଭାବନାର ଏକ ବୃହତ୍ତର ଯୁଗଧର୍ମ ସତ୍ତାର ସୂଚନା ଦିଏ। ମଣିଷ ସମାଜ ବହୁ ପୂର୍ବରୁ ଥିଲେ, ପୁଣି ବହୁ ଯୁଗପାଏ ରହିବେ ବୋଲି ଆମର ବିଶ୍ୱାସ

ଯୋ କର୍ମ କେବଳ ଓମା ପାଇଁ ନୁହେଁ । ବସ୍ତୁ-କର୍ମ ସମ୍ବନ୍ଧଶୀଳ । କର୍ମର ପ୍ରଭାବ ଅଛି । ଯେଉଁ କର୍ମଦ୍ୱାରା ଗୋଷ୍ଠୀର ମଙ୍ଗଳ, ଗୋଷ୍ଠୀର ସମ୍ମାନ ବଢ଼ିବ, ସେହି କର୍ମ ବ୍ୟକ୍ତିଦ୍ୱାରା ସାଧିତ ହେବା ଉଚିତ । ବ୍ୟକ୍ତିର ସ୍ୱାର୍ଥ ଗୋଷ୍ଠୀର ସ୍ୱାର୍ଥ ସହିତ ସଙ୍ଘର୍ଷ ସୃଷ୍ଟି କରିପାରେ । କିନ୍ତୁ ବ୍ୟକ୍ତି ନୁହେଁ ଗୋଷ୍ଠୀର ସ୍ୱାର୍ଥହିଁ ବଡ଼ୁଆ । 'ଧରମା' ଆମର ଏହି ଗୋଷ୍ଠୀ ବା ବାରୁଣ ବଢ଼େଇଙ୍କ ସ୍ୱାର୍ଥ ରକ୍ଷାର ଜ୍ୱଳନ୍ତ ଉଦାହରଣ । ଆଜି ଜଗତରେ ଯେଉଁ ଜାତି ସଭ୍ୟତା ଓ ସଂସ୍କୃତି ସୋପାନରେ ଉଚ୍ଚାରୁଢ଼, ସେମାନଙ୍କ ଜୀବନରେ ଗଭୀର ଦର୍ଶନ କରଅନ୍ତି ? ସେମାନେ କ୍ଷୁଦ୍ର ସ୍ୱାର୍ଥରେ ସ୍ପନ୍ଦିତ ହୁଅନ୍ତି । କି କାଥୋଲିକ, କି ପ୍ରୋଟେଷ୍ଟାଣ୍ଟ, କି କ୍ୱେକର, ସମସ୍ତ ପାର୍ଟିଙ୍କ ଇଂଲଣ୍ଡୀୟ ସ୍ୱାର୍ଥ ସମ୍ମୁଖରେ ଏକସ୍ତ । ଇଂଲଣ୍ଡବାସୀଙ୍କର ମୁଖ୍ୟ ଆଦର୍ଶ ଇଂଲଣ୍ଡର ମଙ୍ଗଳ ସାଧନ । ଏହି ଜାତୀୟତାର ବାଣୀ ଆମ ଦେଶରେ ଗଭୀରଭାବରେ ଉଚ୍ଚାରିତ ହେବାର ସମୟ ଆସିଅଛି । କି ଗଡ଼ଜାତ, କି ମୋଗଲବନ୍ଦୀ, କି ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ; ଏମାନେ ସମସ୍ତେ ବୃହତ୍ତର ଉତ୍କଳର ଅନ୍ତର୍ଗତ । ଆମ୍ଭେମାନେ ସମସ୍ତେ ଓଡ଼ିଆ । ଓଡ଼ିଆର ଜାତୀୟତା ସମ୍ମାନ ମୁଁ ଯେପରି ଅନୁଭବ କରେ, ସେହିପରି ଏହି ଉତ୍ତର ସୀମାନ୍ତସ୍ଥିତ ଖରସୁଆଁ ଅଧିବାସୀମାନଙ୍କର ମଧ୍ୟ ଅନୁଭବ କରିବା ଉଚିତ । ଏହାହିଁ ବୃହତ୍ତର ଆଦର୍ଶ । ଜାତୀୟ କଳଙ୍କକୁ ଅମ୍ଳାନ ଚିତ୍ତରେ ସହିଯିବା ମୂର୍ଖତା । ଜାତିଲାଗି ନାଗରିକର ଅଦେୟ କିଛି ନାହିଁ । ମୋ ଜୀବନ କ୍ଷଣସ୍ଥାୟୀ, ମରଣ ଅଧୀନ । ଯଦି ମୋର ଜୀବନ ଦାନଦ୍ୱାରା ଓଡ଼ିଆ ଜାତିର ସମ୍ୟକ୍ ମଙ୍ଗଳ ସାଧିତ ହେବ, ତେବେ ମୁଁ ସର୍ବଦା ମୋ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ । ଏହି ମହନୀୟ ବାଣୀରେ ଓଡ଼ିଆ ଯୁବକ, ଯୁବତୀ ସ୍ପନ୍ଦିତ ହେବା ବିଧେୟ ।

ଜାତୀୟତାର ବାଣୀ ଆଧୁନିକ ବିଶ୍ୱ ମାନବ ଯୁଗରେ ଏକ ଜଟିଳ ସମସ୍ୟା ସୃଷ୍ଟି କରିଅଛି । ଆମ୍ଭେମାନେ କହୁଁ ଯୁକ୍ତସଂଘ ( Federation ) ସରକାରରେ ପ୍ରତ୍ୟେକ ଜାତି ପ୍ରତ୍ୟେକ ଜାତି ସହିତ ସହଯୋଗ ଚାହେଁ, ଏକୀକରଣ ନୁହେଁ । ସହଯୋଗହିଁ ସୃଷ୍ଟି । ଅସହଯୋଗ ମୃତ୍ୟୁ । ବିଶ୍ୱ-ସଭ୍ୟତା ଏକ ପ୍ରାକୃତିକ ବସ୍ତୁ-ସଂଘ । ଜାତିର ବିକାଶ ଏହି ସମାଜର ବିକାଶଲାଗି । ଦେହର କୌଣସି ଅଙ୍ଗର ପୁଷ୍ଟି ସାଧିତ ହେଲେ ସମଗ୍ର ଦେହର ପୁଷ୍ଟି ସାଧିତ ହୁଏ । କୌଣସି ଅଙ୍ଗର ସୌନ୍ଦର୍ଯ୍ୟହାନୀରେ ସାରା ଅଙ୍ଗର ସୌନ୍ଦର୍ଯ୍ୟ ନଷ୍ଟ ହୁଏ । ଏହି ଆଦର୍ଶ ଭୁଲିଯିବା ଅନୁଚିତ । କିନ୍ତୁ

ଯନ୍ତ୍ର ଜୀବନରେ ଏହି କାରିଗରୀ ବ୍ୟତୀତ ଆଉ ଏକ ସୌନ୍ଦର୍ଯ୍ୟର ବାଣୀ ଅଛି । ତାହା କଳା । ସଂସ୍କୃତି ମାନବର ଶ୍ରେଷ୍ଠ ସମ୍ପଦ । ଅନେକ ସମୟରେ ଆମ୍ଭେମାନେ ଭାବୁ ଯେ ଧାନ, ଚାଉଳ ବା ଖାଦ୍ୟ, ପରିଧେୟ ବସ୍ତ୍ର ମିଳିଗଲେ, ଜୀବନ ପୂର୍ଣ୍ଣ ହୋଇଗଲା । କିନ୍ତୁ ତାହା ନୁହେଁ । ତାହା ହୋଇଥିଲେ ଖରସୁଆଁ ବଣର ବାଘ, ଭାଲୁ ଠାରୁ ଆମ୍ଭେମାନେ କିପରି ନିଜକୁ ଶ୍ରେଷ୍ଠତର ବୋଲି ମନେ କରିବା ?

ଜୀବନହିଁ ପ୍ରକାଶ । ମାନବ ଜୀବନର ଅନନ୍ତ ବିକାଶ ସମ୍ଭବପର । ସଂସ୍କୃତି ଏହାର ସ୍ୱାରକ । ଅନ୍ତର-ମାନବ ଏକ ଅତି ସ୍ପନ୍ଦନ-ପୂର୍ଣ୍ଣ ଜୀବନ । ପ୍ରକୃତିର ପ୍ରତ୍ୟେକ ସ୍ପନ୍ଦନରେ ମାନବ ସ୍ପନ୍ଦିତ ହୁଏ । ଲଜ୍ଜାବତୀ ଲତା ସ୍ପନ୍ଦନ ଗ୍ରହଣର ଏକ ଶ୍ରେଷ୍ଠ ଦୃଷ୍ଟାନ୍ତ । ଯେଉଁ ମାନବ ସ୍ପନ୍ଦନ ଅନୁଭବ କରେ ନାହିଁ ସେ ଜଡ଼ । ସେ ମାନବ ପଦବାଚ୍ୟ ନୁହେଁ । ସ୍ପନ୍ଦନର ଗୁଣ ବୈଚିତ୍ର୍ୟ । ମନୁଷ୍ୟ ଶୁଭ ସ୍ପନ୍ଦନରେ ସ୍ପନ୍ଦିତ ହେବା ବାଞ୍ଛନୀୟ । ମନୁଷ୍ୟ ଏକ ଶ୍ରେଷ୍ଠ ନୈତିକ ଜୀବ । ଜୀବନ ସହିତ ନୀତିର ଘନିଷ୍ଠ ସମ୍ପର୍କ ଅଛି । ତେଣୁ କଳା, ନୀତି ବା ସଂସ୍କୃତି ଧର୍ମକୁ ଛାଡ଼ି ନ ପାରେ । ଯେଉଁ କାମ ଆମ୍ଭେମାନେ କରିବା, ତାହା ସୁନ୍ଦର ହେବ । ପ୍ରତିଦିନ ପଦେ ପଦେ ସୌନ୍ଦର୍ଯ୍ୟର ଏହି ବାଣୀ ଗଭୀର ଭାବରେ ଶୁଣିବା ବିଧେୟ ।

ଆମ୍ଭମାନଙ୍କ କଥାବାର୍ତ୍ତା, ଚାଲି ଚଳଣି, ବ୍ୟବହାର, ବସା, ଉଠା, ଘର ଦ୍ୱାର, ଅଫିସ, ଫାଇଲ, ଲେଖା, ପଢ଼ା ପ୍ରଭୃତି ଏହି ସୌନ୍ଦର୍ଯ୍ୟ ଫୁଟି ଉଠିବା ଉଚିତ । ଜାପାନ ଜାତି ଆମ୍ଭମାନଙ୍କର ଏ ଦିଗରେ ଗୁରୁର ସ୍ଥାନ ଅଧିକାର କରିବେ । ଜାପାନର ଅଭ୍ୟୁଦୟର ତିନୋଟି କାରଣ ଅଛି । ପ୍ରଥମତଃ ଜାପାନୀ ପ୍ରକୃତିପ୍ରିୟ, କଳାପ୍ରିୟ ଓ ଶିକ୍ଷାପ୍ରିୟ । ଏହି ସୌନ୍ଦର୍ଯ୍ୟ-ଉପଲବ୍ଧି ବ୍ୟତୀତ ଜୀବନ ସୁନ୍ଦର, ମଧୁର ବା ମହନୀୟ ହେବା ଅସମ୍ଭବ ।

ଆମ ଦେଶରେ ପ୍ରାଚୀନ କାଳରେ ଏହି କଳା-ପ୍ରୀତି ବା ସୌନ୍ଦର୍ଯ୍ୟ ଜ୍ଞାନ ଜୀବନ ସହିତ ଗଭୀର ଭାବରେ ଜଡ଼ିତ ହୋଇ ରହିଥିଲା । କାରଣ ଘରେ କୌଣସି ନୂତନ ବଧୂ ଆସିଲେ ପ୍ରଥମେ ଏହି "ଯୋଗ" ବା ଯୋଗ୍ୟତାର ପରୀକ୍ଷା ନିଆଯାଏ । ମନୁଷ୍ୟ ରସଗ୍ରାହୀ । ରସହୀନ ମନୁଷ୍ୟ ସମ୍ଭବପର ନୁହେଁ । ମନୁଷ୍ୟ ଜୀବନ-ରସର ମଧୁର ସ୍ୱାଦ ଏପରି ସାମାନ୍ୟ ସାମାନ୍ୟ କାର୍ଯ୍ୟରୁ ପାଇ ପାରିଥିଲା । କଳ୍ପନା କରନ୍ତୁ, ଗୃହ ମନ୍ଦିରର ଏକ "ଠାକୁରଘର" ଯାଇଅଛି । ଶିକ୍ଷିତ ନାରୀଙ୍କ କୁଞ୍ଜଗୋଟି ପିନ୍ଧି, ସେହି ସୁନ୍ଦର ସଜ୍ଜିତ ଆସନରେ ବସି ଧ୍ୟାନ, ଆଧାର କରନ୍ତି । ସେ କେତେ ଆନନ୍ଦ

ଖେଳର ପାଉଥିବ କି ? ସୌନ୍ଦର୍ଯ୍ୟ ସ୍ୱର୍ଗ ଉପମ ଚଉଡ଼ । ଅଗାଧ ନୀଳ ସିନ୍ଧୁ କୂଳ କିମ୍ବା ନକ୍ଷତ୍ରମଣ୍ଡିତ ନୈଶ ଆକାଶ ମନକୁ ମୁଗ୍ଧ କରେ ନାହିଁ କି ? ଆମ ଦୈନନ୍ଦିନ ଜୀବନରେ କଳାର ଏହି କଲ୍ୟାଣମୟୀ ପ୍ରଭାବ ଥିଲା । କ୍ରମେ ତାହା ଲୁପ୍ତ ହୋଇ ଯାଉଅଛି । ତାହାର ଉଦ୍ଧାର ପ୍ରୟୋଜନ ।

ଏହା ସଙ୍ଗରେ ପ୍ରକୃତ ବିଷୟରେ ପଦେ କହିବି । ମନୁଷ୍ୟ ଆନନ୍ଦ-ସନ୍ଧାନୀ । ବିଶ୍ୱରେ ଆନନ୍ଦ କିଏ ନ ଲୋଡ଼େ ? କିନ୍ତୁ ଆମ ଚତୁଃପାର୍ଶ୍ୱରେ ଅନନ୍ତ ଆନନ୍ଦ-ରାଜ୍ୟ ପରିବ୍ୟାପ୍ତ, ଆମେ ତାହାର ସନ୍ଧାନ ରଖୁଁ ନାହିଁ । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ କି ମନୋରମ । ଖରସୁଆଁର ପ୍ରାକୃତିକ ସମ୍ପଦ ଧରାଯାଉ । ଓଡ଼ିଶା ଗଡ଼ଜାତରେ ଅସଂଖ୍ୟ ସୁନ୍ଦର ପ୍ରାକୃତିକ ପୀଠ ଅଛି । ମୁଁ ମୋର ଏହି ଦୀର୍ଘ-ଭ୍ରମଣରେ ନାନା ସ୍ଥାନରେ ପ୍ରକୃତିର ଚିର ସୁନ୍ଦର ରାଜ୍ୟରେ ଧ୍ୟାନ- ମଗ୍ନ ହୋଇଅଛି । ଖରସୁଆଁର "ଭଙ୍ଗା ପାହାଡ଼" ଓ "କୁଲଚକ"ର ସୁନ୍ଦର ବଣ, ପାହାଡ଼, ନଈ କେବେ ମୁଁ କିଅଣ ଭୁଲି ପାରିବ ? ଏତେ ଦୂରକୁ ଯିବା ପ୍ରୟୋଜନ ନାହିଁ । ଏହି ଗଡ଼ର ଉତ୍ତର ଦିଗରୁ ଖାଇମୁନ୍ଦସୀ ପାହାଡ଼ କିପରି ସୁନୀଳ ଓ ସୁନ୍ଦର । ଜୀବନକୁ ଯଦି ଉନ୍ନତ, ମଧୁର, ସୁନ୍ଦର କରିବାକୁ କେହି ଚାହାନ୍ତି, ତେବେ ସେମାନେ ଏହି ଉନ୍ମୁକ୍ତ ବିଶାଳ ପ୍ରାକୃତିକ ସୌନ୍ଦର୍ଯ୍ୟର ସନ୍ଧାନ ନିଅନ୍ତୁ । ଏଥିରେ ପଇସା ବିଶେଷ ଖର୍ଚ୍ଚ କରିବାକୁ ପଡ଼େ ନାହିଁ ।

ଅନନ୍ତ ଆନନ୍ଦ ରାଜ୍ୟ ଆମ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ । ଆମ୍ଭେମାନେ ଅଜ୍ଞାନତା ଅନ୍ଧକାରରେ ନିମଗ୍ନ । ଅନ୍ଧାର ନୁହେଁ, ଆଲୋକହିଁ ପ୍ରୀତିପ୍ରଦ । ଆଲୋକ ବହୁ ଦୂରରେ ନାହିଁ । ସ୍ୱାର୍ଥ ନୁହେଁ, ନିଃସ୍ୱାର୍ଥହିଁ ସୁଖ । ପ୍ରକୃତି ନିସ୍ୱାର୍ଥର ସ୍ମାରକ । ସୂର୍ଯ୍ୟଙ୍କର ସୃଷ୍ଟିକୁ ଆଲୋକ ଦେବାର କି ପ୍ରୟୋଜନ ଅଛି ? ଜଳର ମାନବ ତୃଷା ନିବାରଣ କରିବାର କି ଦରକାର ଅଛି ? ତଥାପି ମାନବ ଲାଗି ପକ୍ଷୀ ଗୀତ ଗାଏ; ଅମ୍ବର ଜଳଦାବୃତ ହୁଏ; ଝରଣା ଝର ଝର ସଂଗୀତ ଗାଇ ବହିଯାଏ; ବସୁନ୍ଧରା ଫଳ, ପୁଷ୍ପବତୀ ହୁଏ, ଶ୍ୟାମଳ ଶସ୍ୟ ସ୍ୱର୍ଣ୍ଣ ବର୍ଣ୍ଣରେ ପରିଣତ ହୁଏ; ଆଲୋକ ଆସେ । ଏହା ପ୍ରକୃତିର ଧର୍ମ । ଏହା ସୃଷ୍ଟିର ନିଃସ୍ୱାର୍ଥ ସେବା ।

ଜୀବନରେ ଯଦି କେହି ଆର୍ତ୍ତ ଥାଏ; ଦୁଃଖୀ, ବିଷଣ୍ଣ ବା କାହାର ବେଦନା-ବିଧୁର ଅନ୍ତର ଥାଏ, ସେମାନେ ପ୍ରକୃତି ନିକଟକୁ ଆସନ୍ତୁ । ସୃଷ୍ଟିର

ଶ୍ରେଷ୍ଠ ରଙ୍ଗାଜୀବର ରଂଗ ରଚ ପ୍ରତ୍ୟହ ଆମ କୁଟୀରର ଗବାକ୍ଷ ସମ୍ମୁଖରେ ବିଶାଳ ନୀଳ ନଭ ପଟରେ ଅଙ୍କିତ । ଅର୍ଥର ପ୍ରୟୋଜନ ନାହିଁ । ଆନନ୍ଦ ଉପଲବ୍ଧି ପାଇଁ ପ୍ରାଣରହିଁ ପ୍ରୟୋଜନ ।

କିନ୍ତୁ ଏହା ସଙ୍ଗେ ଆମ ଜୀବନକୁ ବଳିଷ୍ଠ କରିବାକୁ ହେଲେ ଆମ୍ଭେମାନେ ସଭ୍ୟତାକୁ ଭୁଲି ପାରିବା ନାହିଁ । ସଭ୍ୟତା ଓ ସଂସ୍କୃତିର ଏକ ପାର୍ଥକ୍ୟ ଅଛି । ସଭ୍ୟତା ଯେପରି ବାହାରର, ସଂସ୍କୃତି ସେହିପରି ଭିତରର । ଖରସୂଁ ସୁରାଜ୍ୟ ହେବାକୁ ହେଲେ, ଯେପରି ଏହାର ଗୃହ ଖଣିଜ, ଶିଳ୍ପ ବାଣିଜ୍ୟଗୁଡ଼ିକର ଉନ୍ନତି ସାଧିତ ହେବା ଲୋଡ଼ା, ସେହିପରି ମାନବର ଆନ୍ତରିକ ଗୁଣ ଗୁଡ଼ିକର ଉତ୍କର୍ଷ ସାଧିତ ହେବା ବାଞ୍ଛନୀୟ । ଲୋକମାନଙ୍କର ସାହିତ୍ୟ-ପ୍ରୀତି, ଧର୍ମ-ବିଶ୍ୱାସ, ସୌନ୍ଦର୍ଯ୍ୟାନୁଭୂତି ବିକଶିତ ହେବା ପ୍ରୟୋଜନୀୟ ।

ଆମ ଗ୍ରାମାଞ୍ଚଳେ ବର୍ତ୍ତମାନ ଏପରି ଏକ ଆର୍ଥିକ ପରିସ୍ଥିତି ସୃଷ୍ଟି ହୋଇଛି ଯେ, ଆମ୍ଭମାନଙ୍କ ମନରେ ପ୍ରଥମରୁ ହତାଶ ଆସିବା ସ୍ୱାଭାବିକ । କିନ୍ତୁ ହତାଶ ହେବାର କିଛି କାରଣ ନାହିଁ । ପ୍ରକୃତିର ଦାନର ଅଭାବ ନାହିଁ ; ବିଶ୍ୱ ସୃଷ୍ଟିର ମାନବର ପ୍ରୟୋଜନୀୟ ଖାଦ୍ୟ ପାନୀୟ ବସ୍ତୁର ଅଭାବ ନାହିଁ । ଅଭାବ ଆମଦ୍ୱାରା ସୃଷ୍ଟି । ସମାଜରେ ବଣ୍ଟନ ପ୍ରଥାରେ କୌଣସି ନ୍ୟୂନ ଥିବାରୁ ଆମର ଦୁଃଖ । ଏହି ବଣ୍ଟନ ପ୍ରଥାବଦଳ କରିବାର ଶକ୍ତି ଆମର ଅଛି । ଆମ୍ଭେମାନେ କହୁଁ 'ସ୍ୱରାଜ୍ୟ' ଆମର ଲୋଡ଼ା । ସ୍ୱରାଜ୍ୟ ହେଲେ ଦେଶର ଆର୍ଥିକ ପରିସ୍ଥିତି ବଦଳିଯିବ କିନ୍ତୁ ବଦଳିବ କିପରି ? ଅର୍ଥାତ୍ ଆମ ଦେଶରେ ଏହି ଜମି, ମଣିଷ, ଟଙ୍କା ଅଛି । ଏହାର ସୁପ୍ରୟୋଗରେ ହିଁ ଆମ ଜାତୀୟ ସମ୍ପଦର ଅଭିବୃଦ୍ଧି ସାଧିତ ହେବ । ଏହାକୁ ଗଭୀର ଭାବରେ ଭାବିବାର ଅଛି । ଆମର ମଣିଷ, ଜମି କିମ୍ବା ଟଙ୍କା ପ୍ରକୃତରେ ଅଭାବ ନାହିଁ । ଅଭାବ ଅଛି ସଂଗଠନ ବା ସଂଗଠନ କରିବାଲାଗି ମନ । କଥାରେ କହନ୍ତି, ମନ ଥିଲେ ଧନ ମିଳିଯାଏ । ଆମ୍ଭମାନଙ୍କ ମଧ୍ୟରେ ଏହି ସମ୍ପଦ ବୃଦ୍ଧି କରିବାର ବଳିଷ୍ଠ ମନ ଅଭାବ । ପରିଷ୍କାର ଭାବରେ ପ୍ରଥମରୁ ଜାଣିରଖିବା ଉଚିତ ଯେ ଚାକିରି କରି ସ୍ୱଦେଶର ସଂପଦ ବଢ଼ାଯାଇ ନ ପାରେ । କର୍ମଚାରୀମାନେ ସ୍ୱଦେଶର ପାଣ୍ଠିରୁ ମାତ୍ର ବେତନ ନିଅନ୍ତି । ସେମାନେ ସ୍ୱଦେଶ ପାଣ୍ଠିର ମୂଳଧନ ବୃଦ୍ଧି କିପରି କରିପାରିବେ ? ଏହାକୁ ଚିନ୍ତା କରିବାର କଥା । ବ୍ୟବସାୟ ଦ୍ୱାରା ଲକ୍ଷ୍ମୀ ବଢ଼ନ୍ତି, ବୈଜ୍ଞାନିକ କୃଷି ପ୍ରଣାଳୀ ଦ୍ୱାରା ସଞ୍ଚୟର ଧନ ବୃଦ୍ଧି ହୁଏ । ସେ

ଦିଗରେ ବର୍ତ୍ତମାନ ଶାସ୍ତ୍ର ଦୃଷ୍ଟି ଦେବା ସମୟ ଆସି ଅଛି । ଖରସୁଅଁ ମଣ୍ଡ୍ୟର 'ଶୁଭନାଥ' ଚୂଡ଼ା କଥା ଧରଯାଉ । ଆମ୍ଭେମାନେ ଏହି ପ୍ରକାର କମ୍ବଦନ୍ତୀରୁ କଅଣ ସୂଚନା ପାଉଁ ? ଆମ୍ଭେମାନେ ଜାଣୁଁ ଯେ ପ୍ରାଚୀନ କାଳରୁ ଏହି ଦେଶରୁ ଓଡ଼ିଆ ନାବିକମାନେ ବାଣିଜ୍ୟ-ଦ୍ରବ୍ୟ ନେଇ ସୁଦୂର ସିଂହଳ ଦ୍ୱୀପରେ ବାଣିଜ୍ୟ କରୁଥିଲେ । ସିଂହଭୂମିର ନାମାନୁସାରେ ପୁଣି ସେ ଦେଶର ନାମ ସିଂହଳ । ଆଜି ପୃଥିବୀରେ ଯେଉଁ ଜାତିମାନେ ସଭ୍ୟତା-ସୋପାନରେ ଆଗେଇ ଅଛନ୍ତି, ସେମାନଙ୍କ ଉତ୍ଥାନର କାରଣ କଅଣ ? ତାହା ବାଣିଜ୍ୟ । ଆଜି ଜାପାନକୁ ଦୃଷ୍ଟି ଦିଅନ୍ତୁ । ଭାରତର ଏମିତ ହାଟ ନାହିଁ, ଯେଉଁଠାରେ ଜାପାନୀ-ପ୍ରସ୍ତୁତ ପଦାର୍ଥ ବିକୀ ନ ହେଉଛି । ଏଥିରୁ କଅଣ ଆମର ଶିଖିବାର କିଛି ନାହିଁ ? ଶିଳ୍ପ, କୃଷି ସଂଗଠନହିଁ ଆମ୍ଭମାନଙ୍କର ମୁଖ୍ୟ ସମସ୍ୟା ।

ଏହାର ବିକାଶ ସଙ୍ଗେ ଆମ ଜୀବନର ଆର୍ଥିକ ସ୍ୱଚ୍ଛଳତା ନିର୍ଭର କରେ । ଦେଶର ଆର୍ଥିକ-ଅବସ୍ଥା ଉନ୍ନତ ହେଲେ, ଦେଶରେ ବହୁ କଳା, ସାହିତ୍ୟର ପ୍ରଗତି ସହଜରେ ଓ ସ୍ୱଭାବରେ ହୋଇ ପାରିବ । କଥାରେ କହନ୍ତି, 'ଆଗେ ମଣିଷ ! ତହୁଁ ପଇସା !' ଏହି ବ୍ୟବସାୟମୁଖୀ ବୁଦ୍ଧି ଆମର ବୃଦ୍ଧି କରିବାକୁ ହେବ । ଆଜି ଆମେରିକାରେ ଜଣେ ଜଣେ ଲେଖକ ଖଣ୍ଡିଏ ଖଣ୍ଡିଏ ବହି ଲେଖି ଧନୀ ହୋଇ ଯାଉଛନ୍ତି ; କିନ୍ତୁ ଏ ଦେଶରେ ସାହିତ୍ୟିକମାନେ ସର୍ବଦା ଅର୍ଥାଭାବରେ କାଳ-ଯାପନ କରୁଛନ୍ତି । ତାହାର କାରଣ କଅଣ ? ତାହାର କାରଣ ଏହି ଆର୍ଥିକ ଦୁରବସ୍ଥା ଓ ଶିକ୍ଷାର ଅଭାବ ।

ଆମ ଜୀବନ ସହିତ କଳା, ସାହିତ୍ୟ ଯେପରି ଗଭୀର ଭାବରେ ସଂଯୁକ୍ତ, ଏହି ଅର୍ଥନୀତିକ ଅବସ୍ଥା ମଧ୍ୟ ସେହିପରି ଜଟିଳ ଭାବରେ ଜଡ଼ିତ । ଜୀବନ ଜଟିଳ ; ଏବଂ ଆମ୍ଭମାନଙ୍କୁ ଏହାରି ମଧ୍ୟରେ ଅଗ୍ରସର ହୋଇ ଜୀବନ-ଯାତ୍ରାକୁ ଉପଯୁକ୍ତ କରିବାକୁ ହେବ ।

ମୁଁ ଏହି ଅର୍ଥ ସହିତ ଆଉ ଗୋଟିଏ ଜିନିଷର କଥା କହିବି, ତାହା ଧର୍ମ । ଜୀବନର ଚାରୋଟି ଲକ୍ଷ୍ୟ ଥିଲା—ଧର୍ମ, ଅର୍ଥ, କାମ ଓ ମୋକ୍ଷ । ଏହି "ଚତୁର୍ବର୍ଗ" ଫଳ ପ୍ରାପ୍ତିରେ ମନୁଷ୍ୟତା ପର୍ଯ୍ୟବେଶିତ ଥିଲା । ପ୍ରାଚୀନ ଗୁରୁମାନେ ଜୀବନରେ ଏଥି ମଧ୍ୟରୁ କାହାକୁ ନିମ୍ନସ୍ଥାନ ଦେଇ ନାହାନ୍ତି । ଜୀବନ ଏକ ଗତି । ଆଶ୍ରମ ଭେଦେ ଧର୍ମ-ନିୟମ ନିର୍ଦ୍ଦିଷ୍ଟ ଥିଲା । "ଅର୍ଥ, କାମ" ଗୃହସ୍ଥାଶ୍ରମରେ ଜୀବନର ପ୍ରଧାନ ଲକ୍ଷ୍ୟ; କିନ୍ତୁ "ବାନପ୍ରସ୍ଥ"ରେ

ନୁହେଁ । 'ଧର୍ମ' ନାମରେ ଆଜିକାଲି ସମାଜରେ ଟିକିଏ 'ଉଦାସୀନତା' ସୃଷ୍ଟି ହୋଇଅଛି । ତାହାର ଏକ କାରଣ ଅଛି । ଜଡ଼ ସୃଷ୍ଟି ସ୍ଥୂଳ ସୃଷ୍ଟି । ଏହା ବାହାର ଇନ୍ଦ୍ରିୟ ସକଳଙ୍କୁ ବେଶ୍ 'ଅନୁଭବ' କରେ । ଆମ୍ଭେମାନେ ପୂରା ଜଡ଼ବାଦୀ ମଧ୍ୟ ହୋଇ ପାଶ୍ଚାତ୍ୟ ଦେଶ ଭଳି ସମୃଦ୍ଧିମନ୍ତ ହୋଇ ପାରୁ ନାହୁଁ ; କିମ୍ବା ଏଣେ ଧର୍ମକୁ ପୂର୍ବପୂର ଆମ୍ଭେମାନେ ଧରି ପାରୁନାହୁଁ । ଏହାର ଏକ କାରଣ ଅଛି । ଜଳର ଧର୍ମ ନିମ୍ନ ଦିଗକୁ ଗଡ଼ିବା । ସେହିପରି ପୃଥିବୀ ପୃଷ୍ଠରେ ପ୍ରତ୍ୟେକ ଜାତିର କୌଣସି ବିଶିଷ୍ଟ ଗୁଣରେ ପାରଦର୍ଶିତା ଦେଖାଯାଏ । ଭାରତର ବିଶେଷତ୍ୱ ଏହାର ଆଧ୍ୟାତ୍ମିକତା ବା ଧର୍ମରେ ।

ଧର୍ମର ବିଭିନ୍ନତାରେ ଯାଏ ଆସେ ନାହିଁ । ସତ୍ୟ ଏକ । ପଥ ବହୁତ ସମ୍ଭବପର । ଗୁଣ ଭେଦ କର୍ମ; ଗୁଣ ଭେଦ ସତ୍ୟର ଉପଲବ୍ଧି । ମାର୍ଗର ପାର୍ଥକ୍ୟରେ ଯାଏ ଆସେ ନାହିଁ । ଆମ୍ଭେମାନେ ସତ୍ୟ ଯାତ୍ରୀ । ସତ୍ୟ-ଯାତ୍ରାହିଁ ଜୀବନ । ମୋକ୍ଷ ସତ୍ୟ-ଉପଲବ୍ଧି । ଏହାହିଁ ପ୍ରାଚୀନ ହିନ୍ଦୁ ଜୀବନର ଲକ୍ଷ୍ୟ ଥିଲା । ବ୍ୟଷ୍ଟି ସହିତ ଗୋଷ୍ଠୀର ମଙ୍ଗଳ ଜୀବନରେ ଆଦର୍ଶ ଥିଲା । ସ୍ୱାର୍ଥ ନୁହେଁ ନିଃସ୍ୱାର୍ଥହିଁ ଆନନ୍ଦ ଦେବାକୁ କ୍ଷମ ।

ପୃଥିବୀର ବିଭିନ୍ନ ଧର୍ମ ମଧ୍ୟରେ କଳହ କରିବାକୁ କୌଣସି କାରଣ ନାହିଁ । ତାହାର ମାଳା, ତିଳକ, ମନ୍ଦିରର ପୃଥକତା ପ୍ରକୃତ ପାର୍ଥକ୍ୟ ନୁହେଁ । ଅନ୍ତର-ମାନବ ଏକ । ଏହା ବିଶ୍ୱ-ବ୍ୟାପୀ । ଯେଉଁମାନେ ଏପରି ଧର୍ମ-କଳହ ଉତ୍ଥାପନ କରନ୍ତି, ସେମାନେ ଭ୍ରମରେ ।

ମନୁଷ୍ୟ ଜୀବନରେ ଆତ୍ମ-ବିକାଶଦ୍ୱାରା ଆତ୍ମ-ଉପଲବ୍ଧି କରେ । ତେଣୁ ସେ ଆନନ୍ଦ ପାଏ । ଆମ୍ଭମାନଙ୍କୁ ବର୍ତ୍ତମାନ ସମାଜରେ ପୁଣି ଏହି ସଂସ୍କୃତିମୂଳକ ବା ନୈତିକ ସଂପ୍ରସାରଣ କରିବାକୁ ହେବ । ଜଗତରେ ବହୁ ତୃଷାର୍ତ୍ତ ଜଳ ପାଇ ନାହାନ୍ତି । ଯେଉଁମାନେ ଆଲୋକ-ସନ୍ଧାନ ପାଇଅଛନ୍ତି, ସେମାନେ ଅନ୍ଧାରରେ ଥିବା ପାନ୍ଥଙ୍କୁ ଆଲୋକର ସନ୍ଧାନ ଦେବେ । ଏହାହିଁ ସାମାଜିକତା, ମନୁଷ୍ୟତା । ଏହାହିଁ ମାନବିକ ସହଯୋଗ । ଏହି ଗରମୁଅଁ କଥା ଧରାଯାଉ । ଏଠାରେ ବହୁତ 'ହୋ' ନର, ନାରୀ ଅଛନ୍ତି । ସେମାନେ ଦୈନ୍ୟ ଅବସ୍ଥାରେ ଅଛନ୍ତି । ସେମାନଙ୍କୁ ଧର୍ମର, ସଂସ୍କୃତିର ଓ ଉଚ୍ଚ ଜୀବନ-ଯାପନର ଆଦର୍ଶ ଦେବାକୁ ହେବ । ଏଥିପାଇଁ ଗରମୁଷଁର ଶିକ୍ଷିତ ବ୍ୟକ୍ତିଙ୍କର ଦାୟିତ୍ୱ ଅଛି । କେବଳ ମନୁଷ୍ୟର ଆତ୍ମର ଦେହ ନୁହେଁ; ତାହାକୁ ଅସ୍ପୃଶ୍ୟ ରଖିଦେଲେ, କିମ୍ବା ମନୁଷ୍ୟକୁ ହୀନ ଦୃଷ୍ଟିରେ ଦେଖିଲେ ସମାଜର ବିକାଶ

ହେଉ ନାହିଁ; କିମ୍ବା ଏହା ଆମ୍ଭମାନଙ୍କ ମନୁଷ୍ୟତାର ପ୍ରତିପାଦକ ହେବ ନାହିଁ । ପରନ୍ତୁ ଆଲୋକର ଗୁଣ ଅନ୍ଧାରକୁ ଆଲୋକିତ କରିବା । ଯଥା ଅନ୍ୟମାନେ ଧର୍ମାଲୋକରେ ଆଲୋକିତ, ଆମ୍ଭେମାନେ ଅନ୍ୟକୁ ଆଲୋକିତ କରିବା । କିନ୍ତୁ ଏହାର ପଥ ହିଂସା ବା ବଳପ୍ରୟୋଗ ନୁହେଁ, ଅହିଂସା ବା ପ୍ରେମ ।

ପ୍ରଶ୍ନ ଉଠିବ ଧର୍ମ ସହିତ ଜୀବନର ସମ୍ପର୍କ କଅଣ ? ଧର୍ମର ମୂଳଭିତ୍ତି ଦର୍ଶନ ଭୂମିକା । ଧର୍ମରେ ତିନୋଟି କଥା ପ୍ରଧାନ । ଏକ—ଆତ୍ମା; ଦ୍ୱିତୀୟତଃ ଭଗବାନ ବା ବିଶ୍ୱବ୍ୟାପୀ ଶକ୍ତି; ତୃତୀୟତଃ ନୈତିକତା । ଏହି ତିନୋଟିର ସମଷ୍ଟିଗତ ଧର୍ମ । ଅନ୍ୟ କଥାରେ କହିଲେ ବ୍ୟଷ୍ଟି, ଗୋଷ୍ଠୀ ବା ସମଷ୍ଟି; ଓ ବ୍ୟଷ୍ଟି ସହିତ ବ୍ୟଷ୍ଟିର ଏବଂ ବ୍ୟଷ୍ଟି ସହିତ ସମଷ୍ଟିର ବ୍ୟବହାର କିପରି ହେବ; ଏହା ଧର୍ମରେ ବର୍ଣ୍ଣିତ । ରାଷ୍ଟ୍ରୀୟ ଜୀବନରେ ମଧ୍ୟ ଠିକ୍ ଏହି କଥା । ଆତ୍ମ-ଚୈତନ୍ୟ-ବିଶ୍ୱାସୀ ବିଶ୍ୱ-ଚୈତନ୍ୟ ମାନିବାକୁ ବାଧ୍ୟ; ଏବଂ ଏହାର ନୀତି ଭୂମିକାର ଔଚିତ୍ୟ କଅଣ ?

ଧର୍ମ ବିଷୟରେ ଚିନ୍ତା କଲବେଳେ ପାଦେ ପ୍ରାଚୀନ ଶ୍ଳୋକ ମନେପଡ଼େ ;—

"ଏକମ୍ ସଦ୍ବିପ୍ରା ବହୁଧା ବଦନ୍ତି ।"

ନୀତି ମାର୍ଗରେ ସବୁ ଧର୍ମର ଏକ ବାଣୀ—ପର-ଉପକାର କର, ସତ୍ୟ କୁହ, ପ୍ରାଣୀ-ହିଂସା କର ନାହିଁ । ସବୁଠି ସମାନ, ସବୁଠି କେବଳ ବ୍ୟଷ୍ଟି ଚିନ୍ତା ନୁହେଁ; ଗୋଷ୍ଠୀର ପ୍ରଥମ ଚିନ୍ତା । ମନୁଷ୍ୟ ସାମାଜିକ । ଏହି ସାମାଜିକତାର ସୁନିୟନ୍ତ୍ରଣ ପାଇଁ ସୁନୀତି । ପ୍ରାଚୀନ ହିନ୍ଦୁ ଜୀବନରେ ଜୀବନ-ଯାପନ ଆଦର୍ଶର ଏକ ସୁନିୟନ୍ତ୍ରଣ ହୋଇଥିଲା । ଜୀବନ ଚାରିଗୋଟି ଆଶ୍ରମରେ ବିଭକ୍ତ ହୋଇଥିଲା । ଆଶ୍ରମ ଭେଦ ନୀତି ନିୟମ ଗଠିତ ହୋଇଥିଲା । ମନୁଷ୍ୟ ଏହି ନୀତି ନିୟମ ପାଳନ କରିବାରେ ମଧ୍ୟ ଆନନ୍ଦ ଉପଭୋଗ କରୁଥିଲା । ଜୀବନ-ନଦୀର ଲକ୍ଷ୍ୟ ଥିଲା ସତ୍ୟ-ସିନ୍ଧୁ । ନଦୀ ବହୁପାଏ । କୂଳର ନାନା କୃଷି କ୍ଷେତ୍ର, ଗ୍ରାମ, ନଗର ଅତିକ୍ରମ କରି ନଦୀର ପରିଣତି ମିଳନ ସମୁଦ୍ର ସଙ୍ଗମରେ । ଜୀବନ ପ୍ରତି ଏହି ତୁଳନା ଅଣାଯାଇ ମାତ୍ର । ସତ୍ୟ ଉପଲବ୍ଧି ଜୀବନର ଲକ୍ଷ୍ୟ ଥିଲା । ପ୍ରଥମେ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଏହି ସତ୍ୟର କେବଳ 'ଆଗମ'ଗତ ଜ୍ଞାନ ମିଳୁଥିଲା । ବିଦ୍ୟାର୍ଥୀ ଛାତ୍ରମାନେ ସାଧନା, ସଂଯମ, ଅବଲମ୍ବନ କରି ନୀତି, ଦର୍ଶନ, ଧର୍ମ, ସାହିତ୍ୟ, ଶିଳ୍ପ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ପ୍ରଥାନ୍ତରରେ ଜୀବନ ପାଇଁ ଯେଉଁମାନେ ବ୍ରହ୍ମଚର୍ଯ୍ୟ-

ସାଧନା, ସଂଯମ ଅବଲମ୍ବନ କରି ନୀତି, ଦର୍ଶନ, ଧର୍ମ, ସାହିତ୍ୟ, ଶିଳ୍ପଶାସ୍ତ୍ର ଅଧ୍ୟୟନ କରୁଥିଲେ । ଛାତ୍ରାବସ୍ଥାରେ ଜୀବନ ପାଇଁ ସେମାନେ ବ୍ରହ୍ମଚର୍ଯ୍ୟ-ଆଶ୍ରମରେ ପ୍ରବୃତ୍ତ ହେଉଥିଲେ । ତାହାପରେ ଗୃହସ୍ଥ ଆଶ୍ରମ ଆରମ୍ଭ ହେଉଥିଲା । ମନୁଷ୍ୟର ସମାଜ ପ୍ରତି କର୍ତ୍ତବ୍ୟ ଅଛି । ଗୃହ, ପରିବାରରେ ସାମାଜିକ ମାନବ ଭାବରେ ମନୁଷ୍ୟର କିଛି ବର୍ଷ ଅତିବାହିତ ହେଉଥିଲା । ବର୍ତ୍ତମାନ ଦୁଇଟି ଆଶ୍ରମ ମାତ୍ର ଦେଖାଯାଏ । ପିଲାଏ ସଂଯମ, ସାଧନାହୀନ ହୋଇ ପାଠ ପଢନ୍ତି; ପୁଣି ପାଠ ପଢି ଚାକିରି ଜୀବିକା ନିର୍ବାହ ବା ବିବାହ କରି ଜୀବନ ଶେଷ କରନ୍ତି । କିନ୍ତୁ ପ୍ରାଚୀନ କାଳରେ ସମାଜରେ ଗୃହସ୍ଥ ମାନବ ଜୀବନର ଏକମାତ୍ର ଆଶ୍ରମ ନ ଥିଲା । ଦାରା, ପୁତ୍ର, କନ୍ୟାର ବନ୍ଧନ ମନୁଷ୍ୟକୁ ସର୍ବଦା ମୋହରେ ବାନ୍ଧି ରଖୁ ନ ଥିଲା । ଧନ କେବଳ ଜୀବନର ଲକ୍ଷ୍ୟ ନ ଥିଲା । ମନୁଷ୍ୟ ଉଚ୍ଚତର ଜୀବନ ଯାପନ ନିମିତ୍ତ 'ବାନପ୍ରସ୍ଥ' କିମ୍ବା 'ଯତିବ୍ରତ' ଆଶ୍ରମ ଅବଲମ୍ବନ କରୁଥିଲେ । ସେ ଆଦର୍ଶ ସମାଜ ପକ୍ଷରେ ଶୁଭପ୍ରଦ ଥିଲା । କିନ୍ତୁ ଏ ଯୁଗରେ ସେ ଆଦର୍ଶ ଭାଙ୍ଗି ଯାଇଅଛି । ଏହି ଆଦର୍ଶର ପୁନଃ ପ୍ରଚଳନ କରି ପାରିଲେ ସୁନ୍ଦର । ଏହାଦ୍ୱାରା ସମାଜର ମଙ୍ଗଳ ସାଧିତ ହୁଅନ୍ତା । ସେହି ଆଶ୍ରମ ନିୟମ ମାନି ଚଳୁଥିଲେ, ଅନେକ ବୃଦ୍ଧ ଖରସୁଆଁ ଗଡ଼ ଛଡ଼ "ଦେବଅଡ଼ା" (ଏକ ଆଶ୍ରମ ସ୍ଥାପନ ନିମିତ୍ତ ସୁନ୍ଦର ସ୍ଥାନ) ପାଖରେ ଆଶ୍ରମ ସ୍ଥାପନ କରି ଥାଆନ୍ତେ । କେହି ଅବା 'କୁଲଡଙ୍କ' ବା 'ଭଂଗା ପାହାଡ଼'ର ସୁନ୍ଦର ପ୍ରାକୃତିକ ପୀଠରେ ବନାଶ୍ରମ ସ୍ଥାପନ କରି ଥାଆନ୍ତେ । ବହୁ ଜନ, ଜାତି ସେଠାକୁ ଶାନ୍ତି, ଧର୍ମର ଅମୃତ ବାଣୀ ଶୁଣିବାକୁ ଯାଇ ପାଆନ୍ତେ । ଛାତ୍ରମାନେ ସେଠାରେ "ଗୁରୁକୁଳ" ବାସ ସୁଖ ମଧ୍ୟ ଅନୁଭବ କରୁଥାଆନ୍ତେ । କେବଳ ଖରସୁଆଁ ନୁହେଁ, ଜଙ୍ଗଲର ସୁନ୍ଦର ସୁନ୍ଦର ପ୍ରାକୃତିକ ପୀଠରେ ଏହି "କୁଳ-ପ୍ରଥା" (Residential System) ଅନୁଯାୟୀ ବିଦ୍ୟା-ନିକେତନ ସ୍ଥାପିତ ହେଲେ ସମାଜର ବହୁ ଉପକାର ହୁଅନ୍ତା । ଆମ ସାମାଜିକ ଜୀବନ ଉପରେ ଏହାର ପ୍ରଭାବ ମଧ୍ୟ ଖୁବ୍ ପଡ଼ନ୍ତା । ଜଙ୍ଗଲ ପ୍ରକୃତିର ଏକ ଶିବମୟ ପ୍ରଭାବ ମାନବଆତ୍ମା ଉପରେ ଅଛି । ପୁଣି ଶିକ୍ଷା-ଅନୁଷ୍ଠାନମାନଙ୍କରେ ପ୍ରକୃତି ସହିତ ଜୀବନର ଏହି ସଖ୍ୟ ସ୍ଥାପନର ଚେଷ୍ଟା ହେଲେ, ଆମ ଜୀବନ ନିଶ୍ଚୟ ବୃହତ୍ତର ହୋଇ ଉଠନ୍ତା । ମନୁଷ୍ୟ ଉଚ୍ଚ ଆଦର୍ଶ ଅନୁସରଣ କରିବା ନିମିତ୍ତ ସାଧନା, ସଂଯମ ବଳ ସଂଗ୍ରହ କରି ପାରନ୍ତା ।

ବିଶ୍ୱ-ସଭ୍ୟତା ଓ ସଂସ୍କୃତି ପୀଠରେ ଆମର ଦୁଇଟି ଧାରା ନୟନ ଗୋଚର ହୁଏ । ଗୋଟିଏ ହେଉ ପଥର, ଇଟା ଚୂନ ବାଡ଼ିରେ ଆବଦ୍ଧ —

ତାହା ଅଧୁନିକ ଇଉରୋପୀୟ ଜାତିଙ୍କ ସଭ୍ୟତା । ଅନ୍ୟଟି ପ୍ରାଚୀନ ପୁରାତନ ଆଦର୍ଶ । ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତାହିଁ ଆମ ଜୀବନର ମୂଳ ମନ୍ତ୍ର ଥିଲା । ଏହି ଅତୀତ ଯୁଗ-ଆଦର୍ଶ-ସ୍ରୋତ ବନ୍ଦ ହୋଇଯିବା ବଡ଼ ବେଦନାର କଥା । ସମାଜରେ ଓ ଜୀବନରେ ଆମ୍ଭେମାନେ ପୁଣି ସେହି ଆଦର୍ଶର ଅନୁସରଣ କଲେ ପ୍ରକୃତ ଆନନ୍ଦ ଓ ଅମୃତ ପାଇ ପାରିବା ।

ଜୀବନ ସମ୍ବନ୍ଧେ ଦର୍ଶନ ଘନିଷ୍ଠ ଭାବରେ ସଂପୃକ୍ତ । ଦର୍ଶନ ଜୀବନ-ସୌଧର ମୂଳ ଭିତ୍ତି । ଅଦ୍ୱୈତ-ଦର୍ଶନ ଏକ ଶ୍ରେଷ୍ଠ ଦର୍ଶନ । କର୍ମ-ନିୟମ ଏକ ଅଖଣ୍ଡ ଅମୃତ ନିୟମ । ମନୁଷ୍ୟ ନିଜ କର୍ମର ସ୍ରଷ୍ଟା; ଅର୍ଥାତ୍ ମନୁଷ୍ୟ ହାତରେ ତାହାର ବନ୍ଧନ ଓ ମୁକ୍ତି ନିହିତ । ମନୁଷ୍ୟ ସ୍ୱାଧୀନ । ଏହା ମନୁଷ୍ୟକୁ ଅଭୟର ବାଣୀ ଶୁଣାଏ । ହିଂସା ନୁହେଁ ଅହିଂସାହିଁ ସୁନୀତ ।

ତାହାହେଲେ ଜୀବନରେ ଏତେ ଦୁଃଖ କାହିଁ ? ଆମ୍ଭେମାନେ ହିଂସା, ଦ୍ୱେଷ, ରାଗ, ପରଶ୍ରୀକାତରତା ପ୍ରଭୃତି ମନ୍ଦ ଗୁଣରେ ଜର୍ଜରିତ ହେଉ ବୋଲି ଦୁଃଖ ଭୋଗ କରୁଁ । ମୃତ୍ୟୁ ମିଥ୍ୟା । ଅନ୍ତର-ଜୀବନରେ ମୃତ୍ୟୁ ନାହିଁ । କାରଣ ଏହାର ଜନ୍ମ ନାହିଁ । ସକଳ ସୃଷ୍ଟି-ଜୀବନର ମୂଳ ତତ୍ତ୍ୱ—ବିଶ୍ୱ-ଆତ୍ମା ଶାଶ୍ୱତ ଏହା ଅସୀମ ଓ ଅନନ୍ତ । ସେହି ସତ୍ୟ-ସତ୍ତ୍ୱ ସୃଷ୍ଟି-ବ୍ୟାପୀ ।

ଜୀବନରେ, ବାଧା, ବିଘ୍ନ, ବିପଦ ଅଛି । କିନ୍ତୁ ବୃଥା ଶୋଚନା, ହତାଶ କାହିଁକି ? ବର୍ତ୍ତମାନର ବ୍ୟବହାର କରିବା, ବାଧାକୁ ଡେଇଁଯିବା, ପ୍ରତ୍ୟେକ ବୀର ଭାବରେ ଅନନ୍ତ-କର୍ମ-ସ୍ରୋତରେ ନିଜର ଜୀବନକୁ ଭସାଇ ଦେବା । ଏହି କର୍ମ କଲ୍ଲୋଳରେ ଜୀବନକୁ ଡଙ୍ଗାଇ ପାରିଲେ, ପ୍ରକୃତରେ ଆମ୍ଭେମାନେ ତାହା ପାଇ ପାରିବା । କ୍ଷୁଦ୍ର ନୁହେଁ ବୃହତ୍ତ ହିଁ ମନୁଷ୍ୟ । ବୃହତ୍‌ର ସ୍ୱପ୍ନରେ ଆମ୍ଭେମାନେ ସ୍ୱପ୍ନ ଦେଖିଲେ ବିରହ, ବେଦନା ଅଳୀକ ବୋଲି ସହଜରେ ପ୍ରତୀୟମାନ ହେବ । ମୁଁ ଓ ବିଶ୍ୱ ଏକ । ମୁଁ ଏକ ବିଶ୍ୱ ବ୍ୟାପୀ ଚେତନ । ଏହି ବିଶ୍ୱାସ ଆମକୁ ସକଳ ଦୁଃଖ, ଯନ୍ତ୍ରଣାରୁ ତ୍ରାଣ କରିବ । ତେଣୁ ମୋ ଦର୍ଶନରେ ଦୁଃଖ, ଶୋଚନା ନାହିଁ ।

ଆନନ୍ଦରୁ ମୁଁ ଜନ୍ମ, ଆନନ୍ଦରେ ମୋର ସ୍ଥିତି ଓ ଆନନ୍ଦରେ ମୋର ପରିଣତି । ନିୟମଦ୍ୱାରା ଆମ୍ଭେମାନେ ଚାଳିତ । ଏହି ନିୟମହିଁ ସତ୍ୟ ଓ ଶାଶ୍ୱତ । ଏହା ନ୍ୟାୟ । କର୍ମ-ନିୟମ ମୋ ଜୀବନର ନିୟାମକ । ତେଣୁ ଦୁଃଖ ନୁହେଁ, ଶୋଚନା ନୁହେଁ, କ୍ରନ୍ଦନ ନୁହେଁ; ସୁକର୍ମହିଁ ଲୋଡ଼ା । ଏହା ଜୀବନକୁ ପ୍ରଚୁର ଆନନ୍ଦ ଦେବ । ଜୀବନାନନ୍ଦର ଅମୃତ ରସରେ ଜଗତ ପରିପ୍ଲୁତ ହେବ ।

———

# ଅପରିବର୍ତ୍ତନୀୟ

ବିଶ୍ୱ ପ୍ରବାହ । ପ୍ରବାହର ଦୁଇଟି ଗୁଣ ଥାଇପାରେ । ତାର ପରିବର୍ତ୍ତିତ ପ୍ରବାହ ହୋଇପାରେ; ପୁଣି ଅପରିବର୍ତ୍ତନୀୟ ପ୍ରବାହ ହୋଇପାରେ । ଗତି କିନ୍ତୁ ଜଗତରେ ଲାଗିଅଛି । ଏହା ପୃଥିବୀ ଘୁରିଲା ଭଳି ନିଜ ଅକ୍ଷ ଚତୁଃପାର୍ଶ୍ୱରେ ଘୁରି ଘୁରି ସୂର୍ଯ୍ୟ-ଚକ୍ର ପରିଭ୍ରମଣ ଭଳି ବା ନୁହେଁ ବିଚାର୍ଯ୍ୟ । ଇନ୍ଦ୍ରିୟ ଗୋଚରୀଭୂତ ବସ୍ତୁ ଦୃଶ୍ୟ ପରିବର୍ତ୍ତନ ଅଧୀନ । ପୁଷ୍ପ ସ୍ପନ୍ଦନେ ପ୍ରସ୍ଫୁଟିତ ହୋଇ ରହେ ନାହିଁ । ମନୁଷ୍ୟ ଜନ୍ମ, ଯୌବନ, ଜରା, ମୃତ୍ୟୁର ଅଧୀନ । ବୃକ୍ଷ, ପଶୁ, ପକ୍ଷୀ ପରିବର୍ତ୍ତନଶୀଳ । ବସ୍ତୁ ମଧ୍ୟ ପରିବର୍ତ୍ତନ ଅଧୀନ । କ୍ଷୟ, ପରିବର୍ତ୍ତନ ଯେପରି ପୃଥିବୀର ଧର୍ମ । ଏହି ପରିବର୍ତ୍ତନ, କ୍ଷୟ, ଗତି, ଚଞ୍ଚଳତା ମଧ୍ୟରେ କୌଣସି ଅପରିବର୍ତ୍ତନୀୟ ବିଭବ ଅଛି କି ?

ପରିବର୍ତ୍ତନ କେବଳ ପ୍ରକୃତିରେ ଆବଦ୍ଧ ନାହିଁ । ମନୁଷ୍ୟ ସୃଷ୍ଟ ନାନା ଅନୁଷ୍ଠାନ, ନିୟମ ମଧ୍ୟ ପରିବର୍ତ୍ତନ ସୂଚୁଏ । ରାଜତନ୍ତ୍ର ଭାଙ୍ଗି ପ୍ରଜାତନ୍ତ୍ର ସୃଷ୍ଟି । ପୁଣି ପ୍ରଜାତନ୍ତ୍ର ପରେ 'ସାମ୍ୟବାଦ', 'ଫାସିସିଜମ୍', 'ନାଜି-ଜମ୍' ପ୍ରଭୃତି । ଏବେ ପୁଣି ଗ୍ରୀସ୍‌ରେ ପ୍ରଜାତନ୍ତ୍ର ଭାଙ୍ଗି ରାଜତନ୍ତ୍ର । ଭଙ୍ଗା, ଗଢ଼ା ଲାଗିଅଛି ।

ପରିବର୍ତ୍ତନ ରାଜନୀତିକ ଜଗତର ବାର୍ତ୍ତା । ଏହା ଦେଶ, କାଳ, ପାତ୍ର ଅଧୀନ । ଯୁଗ ଭେଦେ ରାଜନୀତି । ଏହା ଯୁଗସ୍ୱାନ ନୁହେଁ । ଯୁଗସ୍ୱାନର ବାଣୀ ରାଜନୀତିରେ ନାହିଁ । କିନ୍ତୁ ଗୋଟିଏ ଦିଗରୁ ଚିରଚଞ୍ଚଳ, ପରିବର୍ତ୍ତନଶୀଳ ରାଜନୀତି ସୂଚୁଏ ଯେ ପରିବର୍ତ୍ତନ ପୃଥିବୀର ଧର୍ମ । ରାଜନୀତି ତେଣୁ ମନୁଷ୍ୟ ମନରେ ଶାନ୍ତି ଦେଇପାରେ ନାହିଁ ।

କେବଳ ରାଜନୀତି ନୁହେଁ; ସତୀଦାହ ପ୍ରଥା ଦିନେ ସମାଜରେ ଆଦୃତ ହେଉଥିଲା । ଆଜି 'ସତୀଦାହ' ଘୃଣ୍ୟ । ଅସ୍ପୃଶ୍ୟ ପ୍ରଥା ଯୁଗ ଯୁଗ ଧରି ଚାଲି ଆସୁଥିଲା; ତାହା ଆଜି ଭଗ୍ନ । ବାଲ୍ୟ-ବିବାହ ଧର୍ମକାର୍ଯ୍ୟ ଥିଲା; ତାହା ଆଜି ନୀତିଗର୍ହିତ କାର୍ଯ୍ୟ । ତେଣୁ ଏହା ଦଣ୍ଡନୀୟ । ବିଧବା ବିବାହ ସମାଜରେ ଚାଲି ଗଲଣି । ସମୟର ଗତି ସ୍ରୋତରେ ବହୁ ନୂଆ ପ୍ରଥା, ନୂଆ ଫେସନ ଭଳି ସୃଷ୍ଟି ହେବ । ପୁରାତନ ପରିବର୍ତ୍ତିତ, ନୂତନରେ ପରିଣତ । ପୁଣି ବର୍ତ୍ତମାନରେ ଭବିଷ୍ୟତ ଉଙ୍କି ମାରୁଅଛି । କାହିଁ ଅବା ଅତୀତ, ବର୍ତ୍ତମାନକୁ ପ୍ରବାହିତ କରୁଅଛି । ଏହିପରି ଜାଗତିକ ଗତି

ମଧ୍ୟରେ ପରିବର୍ତ୍ତନ, ପରିବର୍ଦ୍ଧନ, ଭଙ୍ଗା, ଗଢ଼ା, ବିକାଶ, ବିନାଶ ଲାଗିଅଛି । ଏହି ପରିବର୍ତ୍ତନ ମଧ୍ୟରେ କଅଣ କିଛି ଅପରିବର୍ତ୍ତନୀୟ ବାଣୀ ମନୁଷ୍ୟ ଶୁଣେଣି ?

ପରିବର୍ତ୍ତନ କିନ୍ତୁ ହେୟ ନୁହେଁ । ଦିନ ପରେ ଦିନ, ବର୍ଷ ପରେ ବର୍ଷ ଗତି କରି ଯାଇଅଛି । ମନୁଷ୍ୟ ପ୍ରତ୍ୟହ ଶ୍ମଶାନ ଅଭିମୁଖୀ ହେଲେହେଁ ଶ୍ମଶାନ ମନୁଷ୍ୟର ପରିଣତି ନୁହେଁ । ଆମ ଦେଶରେ 'ଅନିତ୍ୟତା' ପ୍ରତି ଅନେକେ ଦୃଷ୍ଟି ଦିଅନ୍ତି । ଅନିତ୍ୟ ଚିନ୍ତାରୁ ମନୁଷ୍ୟ 'ନିତ୍ୟ' ଚିନ୍ତା ଆଡ଼କୁ ଯଦି ପ୍ରଧାବିତ ହୁଅନ୍ତା, ତେବେ ଖୁବ୍ ମଙ୍ଗଳ । କିନ୍ତୁ ଦେଶରେ ଓଲଟା ମନୋଭାବ ସୃଷ୍ଟି । ଅନିତ୍ୟରୁ ଉଦାସୀନତା । ଆମ୍ଭେମାନେ ସଂସାର ପ୍ରବାହରେ ଉଦାସୀନ ରହୁଁ । ତେଣୁ ଆମ ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ଜଗତରେ କୌଣସି ଉନ୍ନତି ହୁଏ ନାହିଁ । ଆମ୍ଭେମାନେ "ମାୟା" ଶବ୍ଦଟାକୁ ଅତି ଅଜ୍ଞ ଭାବରେ ଗ୍ରହଣ କରୁଁ । 'ମାୟା' ମାନେ ରହସ୍ୟ ସୃଜଏ । ଜଗତ 'ମାୟା' କହିଲେ ଶୂନ୍ୟ ବୁଝାଏ ନାହିଁ । ଏହା ଏକ ଅତି ଅନିର୍ବଚନୀୟ ଆନନ୍ଦଦାୟକ କର୍ମ ମାତ୍ର । ଏହି ଆନନ୍ଦର ଧାରା ଧରି ନ ପାରିଲେ ମୂର୍ଖତା ।

ପରିବର୍ତ୍ତନ ମଧ୍ୟରେ ଏକ ଅପରିବର୍ତ୍ତନୀୟ ବାଣୀ ପ୍ରଚ୍ଛନ୍ନ ଭାବରେ ଅଛି । ବ୍ରହ୍ମ ସତ୍ୟ, ନିତ୍ୟ । ଆଉ ସଂସାର ଅନିତ୍ୟ ? ନିତ୍ୟ କେଉଁଠି ? ନିତ୍ୟର ଧାରଣା କିଏ କରୁଛି ? ନିତ୍ୟର ମହିମା କେଉଁମାନେ ପ୍ରଚାର କରୁଅଛନ୍ତି ? ଯେଉଁମାନେ ସଂସାର ଶୂନ୍ୟ ନିତ୍ୟ ଧାରଣା କରନ୍ତି ସେମାନେ ଅତେ ଆମେ ଅନୁଧ୍ୟାତା ।

ଜଗତ ଅନିତ୍ୟ ହେଲେହେଁ କ୍ଷଣିକ ନୁହେଁ । ଏହା ପରିବର୍ତ୍ତନଶୀଳ, କିନ୍ତୁ ଏକ ଯୁଗରେ ଶେଷ ହୁଏ ନାହିଁ । ଏକ ଦିଗରୁ ବ୍ରହ୍ମବତ୍ ଜଗତ ମଧ୍ୟ ସତ୍ୟ, ନିତ୍ୟ ଓ ଅନନ୍ତ । ଏହାର ବିସ୍ତାର ଅଛି । ଏହି ପରିବର୍ତ୍ତନଶୀଳ ପୃଥିବୀ ଏହାର ପ୍ରମାଣ ଦିଏ । ଗୋଟିଏ ଶତଦଳ ପୁଷ୍ପ ଝଡ଼େ ମାତ୍ର ପୁଣି ପରବର୍ଷ ଶତ, ସହସ୍ର ଶତଦଳ ପୁଷ୍ପ ପ୍ରସ୍ଫୁଟିତ ହୁଏ । ଋତୁ ପରିବର୍ତ୍ତିତ, ତଥାପି ବିଶ୍ୱ ଋତୁଶୂନ୍ୟ ନୁହେଁ । ମନୁଷ୍ୟ ଜରା, ବ୍ୟାଧି, ମୃତ୍ୟୁ ଅଧୀନ; କିନ୍ତୁ ମନୁଷ୍ୟ ଗୋଷ୍ଠୀ ଅଛନ୍ତି ଓ ରହିବେ । ଏହି ଜାଗତିକ ପ୍ରବାହରେ ଅନିତ୍ୟ ଓ ନିତ୍ୟ ଚିର ସମ୍ପୃକ୍ତ । ସୀମ-ଅସୀମ, ନିତ୍ୟ-ଅନିତ୍ୟ, ରୂପ-ଅରୂପ ପରସ୍ପର ସଂପୃକ୍ତ । ଏମାନଙ୍କ ମଧ୍ୟରେ ଏକ ମଧୁର ସମ୍ପର୍କ ଚିର ବିରାଜମାନ ।

ପ୍ରଳୟ କଳ୍ପନା ପେଛରେ ଟିକ୍, ସୃଷ୍ଟି-ସ୍ୱପ୍ନ ସେପରି ସତ୍ୟ । ଏହା ମଧ୍ୟରେ କିନ୍ତୁ ସୃଷ୍ଟି ରହିଛି । ଜାହାଁ ନୂତନ ନିହାରିକାର ସୃଷ୍ଟି; ଜାହାଁ ଅବା ଭୂମିକମ୍ପରେ ପୁରାତନ ସହର ଭୂମିସାତ୍ କିମ୍ବା ଧୂଳିସାତ୍ ହେଲେ; କିଛୁଦିନ ପରେ ସେଠାରେ ଏକ ନୂତନ ନଗରର ସୃଷ୍ଟି । ଏହି ଚିର ପରିବର୍ତ୍ତିତ, ଛନ୍ଦଯୁକ୍ତ ପ୍ରବାହ ମଧ୍ୟ ଏକ ଦଗରୁ ଅପରିବର୍ତ୍ତିନୀୟ । ଏହା ଅପରିବର୍ତ୍ତିନୀୟର ଏକ ଲକ୍ଷଣ । ଏହି ଚିର ପରିବର୍ତ୍ତନଶୀଳ ଜଗତ ମଧ୍ୟରେ ଯେ ଏହି ଚିରନ୍ତନ ବୁଝିଛନ୍ତି; ସେହିମାନେ ଲୀଳାମାଧୁରୀ ବୁଝିବାକୁ ସକ୍ଷମ । ଲୀଳା-ବାଦ ଅନ୍ଧ କିଛି ନୁହେଁ । ଏହା ମନୁଷ୍ୟର ଏକ ଗଭୀର ଅନୁଭୂତିମୂଳକ ମାନସିକ ଅବସ୍ଥା । ଯେତେବେଳେ ମନୁଷ୍ୟର ଦୃଷ୍ଟି ପ୍ରସାରିତ ହୁଏ; ପ୍ରାଣ ଉଦାର, ଉନ୍ନତ ହୁଏ; ସେତେବେଳେ ମନୁଷ୍ୟ ସହଜରେ ବିଶ୍ୱ 'ଲୀଳା' ବୁଝି ପାରିବ । ବିଶ୍ୱ-ପ୍ରବାହ ଲୀଳାତ୍ତ୍ୱର ଧାରଣା ହେବ ସେତିକି ବେଳେ; ଯେତେବେଳେ ମନୁଷ୍ୟ ସୃଷ୍ଟି ପର୍ଯ୍ୟାୟର କ୍ରୀଡ଼ାତ୍ତ୍ୱ ଗଭୀର ଭାବରେ ଅନୁଭବ କରିବ । ମୁଁ ନୁହେଁ; ମୋ ଭଳି ସହସ୍ର ବ୍ୟକ୍ତି ଏକ ନିୟମର ଅଧୀନ । ମୋର ଗ୍ରାମ ନୁହେଁ, ବିଶ୍ୱରେ କୋଟି କୋଟି ଗ୍ରାମରେ ଏକ ନିୟମ ପ୍ରଚଳିତ । ଲୀଳାବାଦ ପଶ୍ଚାତରେ ମନରେ ବିଶ୍ୱଗତର ଏକ ଗଭୀର ଅନୁଭୂତି ଥିବା ଉଚିତ । ସେତିକି ନ ହେଲେ ଲୀଳା-ବାଦ ଉପଲବ୍ଧି ହୋଇ ପାରିବ ନାହିଁ । ଏହି ଲୀଳାବାଦ ମଧ୍ୟ ପରିବର୍ତ୍ତନ ମଧ୍ୟରେ ମନୁଷ୍ୟ ମନରେ ଏକ ଅପରିବର୍ତ୍ତନୀୟର ବାଣୀ ଶୁଣାଏ । ମନୁଷ୍ୟ କାହା ଉପରେ ତାହାର ମନ ସ୍ଥିର କରି ରଖେ ? ସେ କିପରି 'ଲୀଳାତ୍ତ୍ୱ'ର ମୂଳଦୁଆ ସ୍ଥିର କରି ରଖେ—? ପରିବର୍ତ୍ତନ, ଶଙ୍କା, ଅନିଶ୍ଚିତତା ମଧ୍ୟରେ ସ୍ୱତଃ ମନୁଷ୍ୟ ଏକ ଅଖଣ୍ଡିତ କ୍ରମର ପରିକଳ୍ପନା କରେ । ତାହା ନ ହେଲେ ଆଶ୍ୱାସନା ନାହିଁ ।

କିନ୍ତୁ ଏହି ଅପରିବର୍ତ୍ତନୀୟ ବାଣୀ ମଧ୍ୟ ପ୍ରକୃତି-ପ୍ରାଣୀର ପରିସ୍ଫୁଟ ।

ପ୍ରକୃତି ପ୍ରତି ଦୃଷ୍ଟି ଦିଅଯାଉ । ଋତୁ ପରିବର୍ତ୍ତନ ହୁଏ । ଏକ ସ୍ୱତନ୍ତ୍ର ପର୍ଯ୍ୟାୟ ଏହି ପରିବର୍ତ୍ତନକୁ ନିୟନ୍ତ୍ରଣ କରେ । ଗ୍ରୀଷ୍ମରେ ରଶ୍ମିର ପ୍ରଖରତା, ବୃକ୍ଷର ପତ୍ରହୀନତା, ଜଳାଧାରର ଜଳଶୂନ୍ୟତା; ଆଷାଢ଼ ଅମ୍ବରର ଘନ ଜଳଦମାଳ, ଶ୍ରାବଣର ବାରିଧାର, ଶରତର ନୈଶ ଆକାଶର ନକ୍ଷତ୍ରରାଶି କିମ୍ବା ନୀଳ ଗଗନର ଶୋଭା; କେଦାରର ଶ୍ୟାମ ଶସ୍ୟ, ହେମନ୍ତର ସୁବର୍ଣ୍ଣ ଧାନ୍ୟ ସମ୍ଭାର; ଶୀତର ଶୈତ୍ୟାଧିକ୍ୟ; ବସନ୍ତର ବକୁଳର ସୁରଭିତ ବୃନ୍ତ, ମଧୁକ୍ଷରଣ, ମଳୟ ଚନ୍ଦନ ଲାଗିଅଛି । ପରିବର୍ତ୍ତନ ହେଉଅଛି । ଗ୍ରୀଷ୍ମ ପରେ ବର୍ଷା କିମ୍ବା ମଧୁର ମଳୟ ପରେ ଝଞ୍ଜା ବହୁଅଛି; ଏହି

ପରିବର୍ତ୍ତନ ପଛରେ ଏକ ଅପରିବର୍ତ୍ତନୀୟ ବାଣୀ ନାହିଁ କି ? ଯଦି ଗ୍ରୀଷ୍ମ ପରେ ବର୍ଷା ନ ଆସନ୍ତା କିମ୍ବା ହେମନ୍ତ ପରେ ଗ୍ରୀଷ୍ମ ହଠାତ୍ ଉପସ୍ଥିତ ହୁଅନ୍ତା, ତେବେ ମନୁଷ୍ୟ କି ହତବାକରେ ନ ପଡ଼ନ୍ତା ? ଏହି ପରିବର୍ତ୍ତନ ଓ ଅନିଶ୍ଚିତତା ମଧ୍ୟରେ ଏକ ନିଶ୍ଚିତ ଅପରିବର୍ତ୍ତନୀୟର ବାଣୀ ସର୍ବଦା ମନୁଷ୍ୟଙ୍କୁ ଅଭୟ ବାର୍ତ୍ତା ଶୁଣାଇ ଆସିଅଛି । କେବଳ ଋତୁପର୍ଯ୍ୟାୟ ନୁହେଁ; ନକ୍ଷତ୍ର, ତାରା, ଗ୍ରହ ପୃଥିବୀର ପ୍ରାଣୀ, ଉଦ୍ଭିଦ ସମସ୍ତେ ଏକ ଅପରିବର୍ତ୍ତନୀୟ ନିୟମର ଅଧୀନ । ଶିଶୁ ଜନ୍ମ, ଯୌବନ, ଜରା ଓ ମୃତ୍ୟୁର ଅଧୀନ ।

ମହାକାଶ, ମହାକାଳ ଅଧୀନ ପ୍ରକୃତି ପରିବର୍ତ୍ତିତ, ପରିବର୍ଦ୍ଧିତ, କ୍ଷୟଶୀଳ ଓ ଖଣ୍ଡବିଖଣ୍ଡିତ ହେଲେ ମଧ୍ୟ ମନୁଷ୍ୟ ତାହାର ଅନୁସନ୍ଧାନ ଫଳରେ ଜାଣିଅଛି, ଏହା ସମସ୍ତ ନିୟମ ଅଧୀନ । ଏକ ଦିଗରୁ ଏହି ନିୟମ ପ୍ରାକୃତିକ ଶୃଙ୍ଖଳା ରକ୍ଷିବାକୁ ସକ୍ଷମ ହୋଇଅଛି ।

ପ୍ରକୃତି ନୁହେଁ, ମନୁଷ୍ୟର ଆଦର୍ଶ ଓ ନୀତି ରାଜ୍ୟରେ ଏକ ଅପରିବର୍ତ୍ତନୀୟ ଆଦର୍ଶ ସମ୍ରାଟ-ଆସନ ଗ୍ରହଣ କରି ବସିଅଛି । ସତ୍ୟ ସମସ୍ତଙ୍କଦ୍ୱାରା ଆଦୃତ । ଅହିଂସାର ନିନ୍ଦା କେହି କରେ ନାହିଁ । ପରର ଉପକାର ସାଧନ ଭଲ । ସେବା, ଶାନ୍ତି, କ୍ଷମା, ସୌନ୍ଦର୍ଯ୍ୟବୋଧ ପ୍ରଭୃତି ମନୁଷ୍ୟର ସୁଗୁଣ । ଅର୍ଥାତ୍ ଏଥିରୁ ସୂଚିତ ହୁଏ ଯେ ମନୁଷ୍ୟର ମାନସିକ ରାଜ୍ୟରେ କେତେଗୁଡ଼ିଏ ନୀତିଗତ ପ୍ରଶ୍ନ ଚିରଦିନ ଲାଗି ସମାଧାନ ହୋଇ ଯାଇଅଛି ଏବଂ ଏହା ଅପରିବର୍ତ୍ତନୀୟ । ହୋଇପାରେ, କାହିଁ ଜଣେ ଅଧେ ଲୋକ, ବା ଏକ ଦଳ ଏହାର ବିରୁଦ୍ଧରେ ମତ ପ୍ରଚାର କରିଅଛନ୍ତି; କିନ୍ତୁ ସମୂହ ଭାବରେ ମନୁଷ୍ୟ ସମାଜ କେତେଗୁଡ଼ିଏ ନୀତିକୁ ସ୍ୱତଃସିଦ୍ଧରୂପେ ଧରିନେଇ ଶାନ୍ତି, ଆଶା ଓ ଆଶ୍ୱାସନା ପାଇ ଆସିଅଛି ।

ସେହିପରି ସାହିତ୍ୟ ଓ କଳାଭୂମିରେ ଏହି 'ଅପରିବର୍ତ୍ତନୀୟ' ଅନ୍ତର ସୁସ୍ପଷ୍ଟ ହୋଇ ଉଠିଅଛି । ସାହିତ୍ୟ ସର୍ବଦା ମାନବର ସ୍ପନ୍ଦନ ରାଜ୍ୟର ଏକ ଅପରିବର୍ତ୍ତନୀୟ ଛବି ଦେବାପାଇଁ ଅଭିପ୍ରେତ । ଯେଉଁ ସାହିତ୍ୟ ତାହା ନ ଦିଏ ତାହା ଯୁଗହୀନ ସାହିତ୍ୟ ନୁହେ । ଆମ୍ଭେମାନେ ଯେତେବେଳେ ପଢ଼ୁ "ଜନ କ୍ରିଷ୍ଟୋଫର" ଏକାଧିକ 'ନାସ୍ତ୍ରି-ପ୍ରେସ'ରେ ପଢ଼ୁଅଛୁ, ସେତେବେଳେ ଆମ୍ଭେମାନେ ବାଧ୍ୟହୋଇ ସ୍ୱୀକାର କରୁ—ମନୁଷ୍ୟ ଜୀବନର ଏହି ଦୁର୍ବଳତାକୁ । ମନୁଷ୍ୟ ରୂପର ଆହ୍ୱାନ ଶୁଣେଣି । ମାନବ ଅନ୍ତର ନାନାଭାବରେ ନାଟ୍ୟପ୍ରତ ଆକୃଷ୍ଟ ହୁଏ । ଶ୍ରେଷ୍ଠ ଶିଳ୍ପୀ ଯେଉଁ ସେହି କଥାର ଏକ ନିଖୁଣ ଛବି ଆଙ୍କିଦେଲେ ତାଙ୍କ ବସ୍ତଃ

ବହୁବିଖ୍ୟାତ ଉପନ୍ୟାସ 'କ୍ରିଷ୍ଟୋଫର'ରେ । ସେ ଯାହା ଆଙ୍କିଗଲେ ତାହା କ୍ଷଣିକ କିମ୍ବା ଏହି ଯୁଗରେ କେବଳ ଆବଦ୍ଧ ନୁହେଁ । ଏହା ଏକ ଯୁଗହୀନ ଅପରିବର୍ତ୍ତନୀୟ ବାର୍ତ୍ତା—ପୁଣି ଠିକ ଏହି ଜୀବନର ଅନ୍ୟ ଛବି ଦେଇ ଗଲେ ସିନ୍‌କ୍ଲେଆର୍ ତାହାଙ୍କ ବହୁ-ବିଖ୍ୟାତ ଉପନ୍ୟାସ—"କୋ-ଭାଡ଼ିସ"ରେ (କେଉଁଆଡ଼େ ଯାଉଛ ?) ଉପନ୍ୟାସର ନାୟକ ନାନା, ନିର୍ଯ୍ୟାତନା ମଧ୍ୟରେ ଗୋଟିଏ ନାରୀ ପ୍ରେମରେ ପ୍ରଧାବିତ—ସେ ତାହାର ପ୍ରେମିକ ।

ଏଥିପାଇଁ ସେ ସମସ୍ତ ଦୁଃଖ, ଦୈନ୍ୟ, ନିର୍ଯ୍ୟାତନା, ବନ୍ଦୀଶାଳାକୁ ତାଚ୍ଛଲ୍ୟ କରିଛି. ଏପରି କି ଜୀବନ ଦେବାକୁ ମଧ୍ୟ ପ୍ରସ୍ତୁତ ହୋଇଛି—କିନ୍ତୁ ଶେଷରେ ସେ ପାଇଛି ତାର ଏକନିଷ୍ଠ ପ୍ରଣୟିନୀକୁ—ଅର୍ଦ୍ଧମୃତ ଉଲଗ୍ନ ବେଶରେ··· । ଜନ କ୍ରିଷ୍ଟୋଫର ଯେପରି ମାନବ 'ଚରିତ୍ର'ର ଏକ ସାଧାରଣ ବିଗ୍ରହର ସୂଚନା ଦିଏ; 'କୋଭାଡିସ' ମଧ୍ୟ ସେହିପରି ମାନବ ଅନ୍ତର୍ନିହିତ 'ଆଦର୍ଶ-ଚରିତ୍ର'ର ଏକ ନିଖୁଣ ଛବି ଦିଏ ।

ଏହି ଅପରିବର୍ତ୍ତନୀୟ ବାଣୀ କେବଳ ଉପନ୍ୟାସ ନୁହେ, ପୃଥିବୀର ଅଜସ୍ର ନାଟକ, କାବ୍ୟ, କବିତାରେ ଫୁଟି ଉଠିଅଛି, ଶିଳ୍ପୀର ଅମର ତୂଳିକା ଲଗି ଜୀବନ୍ତ ହୋଇ ଉଠିଅଛି । ପ୍ରକୃତରେ ଗୃହଚ୍ଛବି, ପ୍ରେମିକ ପ୍ରେମିକାର ଉଦ୍‌ବେଗମୟ ଭାବ, ମାତୃତ୍ୱର ଜ୍ୱଳନ୍ତ ଦୃଷ୍ଟାନ୍ତ. ବାତ୍ସଲ୍ୟ ପ୍ରଭୃତି ନାନା ଅପରିବର୍ତ୍ତନୀୟ ମାନବିକ ଅନ୍ତର-ବିଗ୍ରହ ସାହିତ୍ୟରେ ଚିତ୍ରିତ ହୋଇ ଅଗଣିତ ପାଠକ ପାଠିକା ପ୍ରାଣରେ ରସ ସୃଷ୍ଟି କରିଅଛି ; ସେଥିପାଇଁ ସାହିତ୍ୟର ଗ୍ରାହକ 'ସାହିତ୍ୟ'ର ଏତେ ପ୍ରେମିକ ହୋଇ ପଡ଼ିଅଛି ଓ କବି ଏବଂ ଲେଖକଙ୍କୁ ପ୍ରାଣର ଦେବତା ବୋଲି ପୂଜା ଅର୍ପିଅଛି ।

କିନ୍ତୁ ଅପରିବର୍ତ୍ତନୀୟ, କେବଳ ସାହିତ୍ୟ ନୁହେ, ସଙ୍ଗୀତ, ଚିତ୍ରାଙ୍କନ ପ୍ରଭୃତି ନାନାବିଧ କଳାରେ ମଧ୍ୟ ଆତ୍ମପ୍ରକାଶ କରିଅଛି । ସନ୍ଧ୍ୟାକାଳୀନ ସିନ୍ଧୁର ଗୁରୁ ଗମ୍ଭୀର ଗର୍ଜ୍ଜନଠାରୁ, ପିକର ପଞ୍ଚମ ତାନ ମଧ୍ୟ ସଙ୍ଗୀତରେ ମନୁଷ୍ୟ ପ୍ରକାଶ କରିଅଛି ଏବଂ ଏହି ଅପରିବର୍ତ୍ତନୀୟ ସ୍ୱର-ମାଧୁରୀ ବହୁ-ଚିତ୍ର-ବିନ୍ୟାସର ମୂର୍ତ୍ତି କରିଅଛି । ସେହିପରି ତୁଷାରାବୃତ ଚିରିଶୃଙ୍ଗ, ଝରଣା-ଝଙ୍କୃତ ଶ୍ୟାମବନରାଜି, ନକ୍ଷତ୍ର ମଣ୍ଡିତ ନୈଶ ଆକାଶ କିମ୍ବା ଏକ ରୂପସୀର ସ୍ୱଚ୍ଛ ଅଙ୍ଗ କାନ୍ତି ଚିତ୍ର-ଶିଳ୍ପୀର ତୂଳିକାରେ ଅମରତ୍ୱ ଲଭ କରିଅଛି । କଳା ଓ ସାହିତ୍ୟ ସର୍ବଦା ଏହି ଅପରିବର୍ତ୍ତନୀୟ ବାଣୀ ଶୁଣାଏ । ଜଗତର ଚିର ଚଞ୍ଚଳ, ପରିବର୍ତ୍ତନଶୀଳ, କ୍ଷଣିକ, କ୍ଷୟଯୁକ୍ତ

ଜୀବନର ଏକ ଅଚଳନ୍ତ-ସ୍ତୂପ କଳା-ସାହିତ୍ୟ ତା ବକ୍ଷରେ ରଖି ଏ ଅପରିବର୍ତ୍ତନୀୟ ଧ୍ୱଜା ଉଡାଇ ଯାଏ ।

ଆଧ୍ୟାତ୍ମିକ-ଜଗତରେ ଏହି ଅପରିବର୍ତ୍ତନୀୟର ବାର୍ତ୍ତା ଅତୀବ ଗମ୍ଭୀର, ସୁସ୍ପଷ୍ଟ ହୋଇ ଫୁଟି ଉଠିଛି । ମନୁଷ୍ୟ ଯେତିକି ପରିବର୍ତ୍ତନ, କ୍ଷୟ, କ୍ଷଣିକକୁ ଛାଡ଼ି ସୃଷ୍ଟିର ଗଭୀର ଅଭ୍ୟନ୍ତରକୁ ଗତି କରିଅଛି, ସେତିକି ସେ ଏହି ଅପରିବର୍ତ୍ତନୀୟର ସନ୍ଧାନ ପାଇଅଛି; ଏବଂ ଅନ୍ୟ ପ୍ରାଣରେ ଏହି ଅପରିବର୍ତ୍ତନୀୟ ପିପାସାର ସୃଷ୍ଟି କରିଅଛି । ସେଥିପାଇଁ ହୁଏତ 'ମୈତ୍ରେୟୀ' ଧନ ସମ୍ପଦରେ ସନ୍ତୁଷ୍ଟ ହୋଇ ନାହାନ୍ତି; 'ନଚିକେତା' ଧନ, ଯଶ, ଗୋପଲକ୍ଷୀରେ ସନ୍ତୁଷ୍ଟ ନ ହୋଇ ଆଉ କିଛି ଅକ୍ଷୟ ସତ୍ୟ ପଛରେ ଧାବିତ ହୋଇଥିଲେ । ସେଥିପାଇଁ ହୁଏତ ବୁଦ୍ଧ ସିଂହାସନ, ଯୁବତୀ ସ୍ତ୍ରୀ, ଶିଶୁ ପୁତ୍ରକୁ ପରିତ୍ୟାଗ କରିଥିଲେ । ଏହି ଅପରିବର୍ତ୍ତନୀୟ କଅଣ ?

ଏହା ବିଶ୍ୱର ସାର । ଏହା ହିଁ ସତ୍ୟ, ସୁଗମ୍ଭୀର, ଅକ୍ଷୟ, ବେଦନାଭିଭୂତ ଓ ଚିର ନବ, ଚିର ଆନନ୍ଦ । ବିଶ୍ୱ-ଚେତନା ହିଁ ସତ୍ୟ । ଏହା ବିଶ୍ୱ-ବ୍ୟାପୀ ଓ ଅପରିବର୍ତ୍ତନୀୟ । ଏହାଙ୍କୁ ଆଶ୍ରା କରି ସୃଷ୍ଟି, ସ୍ଥିତି ଓ ଲୟ ।

ଏକଦାଗରୁ ଆମ୍ଭେମାନେ ଜାଣିଥିଲେ ଯେ, ଏହି ଚିର ପରିବର୍ତ୍ତନ ମଧ୍ୟରେ ଅପରିବର୍ତ୍ତନୀୟତା । ତାହା, କିନ୍ତୁ ଏକ ପ୍ରକାର ଅପରିବର୍ତ୍ତନୀୟ । ତାହା ପ୍ରବାହ ଅଧୀନ । କିନ୍ତୁ ଆଧ୍ୟାତ୍ମିକ ଜଗତ ପରିବର୍ତ୍ତନ ମଧ୍ୟରେ; ପ୍ରବାହ ପ୍ରାଣରେ ଅନ୍ୟ ଏକ ପ୍ରକାର ଅପରିବର୍ତ୍ତନୀୟ ସତ୍ତାର ସୂଚନା ଦିଏ । ଶ୍ୱେତକେତୁ ବାର ବର୍ଷ ଅଧ୍ୟୟନ ପରେ ଗୃହକୁ ଫେରିଲେ । ତାହାଙ୍କ ପିତା ପଚାରିଲେ, "ଶ୍ୱେତକେତୁ; ଜାଣ, କଅଣ ଜାଣିଲେ ସମସ୍ତ ଜଣାଯାଏ ?" ବିଶ୍ୱର ଏକ ମୂଳାଧାର ଅଛି । ମୂଳାଧାର ଜ୍ଞାନ 'ମୁଁ' ବା ଆତ୍ମଜ୍ଞାନରୁ ସୁସ୍ପଷ୍ଟ ଓ ସ୍ୱପ୍ରମାଣିତ ।

ଗୀତାକାର କହିଲେ—

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।

ଅର୍ଥାତ୍ ଶସ୍ତ୍ର ଛେଦନ କରିପାରେ ନାହିଁ, ଅଗ୍ନି ଦଗ୍ଧ କରିପାରେ ନାହିଁ, ଜଳ ଓଦା କରିପାରେ ନାହିଁ, କିମ୍ବା ବାୟୁ ଶୁଷ୍କ କରିପାରେ ନାହିଁ । କିମ୍ବା ଅପର କଥାରେ କହିଲେ,

"ନ ଜାୟତେ ମ୍ରିୟତେ ବା କଦାଚିନ୍
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।"

ଅର୍ଥାତ୍—ଜନ୍ମ, ଅସ୍ତିତ୍ୱ, ବୃଦ୍ଧି, ପରିଣାମ, ଅପକ୍ଷୟ ଓ ବିନାଶ ଛ ପ୍ରକାର ବିକାର ଏହାକୁ ସ୍ପର୍ଶ କରେ ନାହିଁ । ଏହା ଏକ ପ୍ରକାର ଅପରିବର୍ତ୍ତନୀୟ ସତ୍ତାର ସନ୍ଧାନ ଦିଏ । ଏହା ଅନ୍ୟ ଏକ ପ୍ରକାର ଶ୍ରେଷ୍ଠ-ସତ୍ୟର ବାଣୀ ଶୁଣାଏ ।

ଏହି ସତ୍ତାର ପ୍ରମାଣ କଅଣ ? 'ଆତ୍ମ' ଜ୍ଞାନ ସ୍ୱତଃସିଦ୍ଧ । ସନ୍ଦେହ-ବାଦୀର ମୂଳପିଣ୍ଡ—'ମୁଁ' । ସନ୍ଦେହ ପୂର୍ବରୁ ମୁଁ ବା ଆତ୍ମପ୍ରତିଷ୍ଠା । ଏହି 'ମୁଁ'ର ଏକ ବୃହତ୍ତର ପରିକଳ୍ପନାହିଁ—ବିଶ୍ୱ ବ୍ୟାପି ବ୍ରହ୍ମର ଧାରଣା; ଯାହା ଚିର ଅପରିବର୍ତ୍ତନୀୟ ଏବଂ ଏହା ବିଶ୍ୱ-ମୂଳାଧାର । ଏହାକୁ ଆଶ୍ରା କରି ମୁଁ, ତୁମ୍ଭେ ଓ ସାରା ବିଶ୍ୱ । ଏହାକୁ ବିଦାୟ ଦେଲେ ଆମ୍ଭମାନେ ଶୂନ୍ୟ-ବାଦ ପାଇଁ, ଏହା ଭ୍ରମ । ଶୂନ୍ୟରୁ ସୃଷ୍ଟି ସମ୍ଭବପର ନୁହେଁ । କର୍ମର କର୍ତ୍ତା ଅଛି । ବିଶ୍ୱ କର୍ମର କର୍ତ୍ତା ବିଶ୍ୱକର୍ମା—ବ୍ରହ୍ମ ।

ବିଶ୍ୱ-ପର୍ଯ୍ୟାୟରେ ମାନବ ନିମଜ୍ଜିତ । କିନ୍ତୁ ମନ୍ଥନରେ ଯେ ଜ୍ଞାନ ମନୁଷ୍ୟ ପାଏ, ସେ ଜ୍ଞାନ କିଏ ପାଏ ? ଜ୍ଞାତା ଓ ଜ୍ଞେୟ ସମ୍ବନ୍ଧାଧୀନ । ଜ୍ଞାତାର ଜ୍ଞାନ ନ ଥିଲେ ଜ୍ଞେୟ ଜ୍ଞାନ କେଉଁଠାରୁ ପାଇବ ? ଏକ ଦିଗରୁ ଦେଶ କାଳ ସୀମାବଦ୍ଧ ଜ୍ଞାତାହିଁ ଜୀବାତ୍ମା । ଏହାର ବନ୍ଧନ କେବଳ ବ୍ୟବହାରିକ ଜଗତ ଥିବାଯାଏ; ଅର୍ଥାତ୍ ଜୀବାତ୍ମା ମୁକ୍ତ ହେଲେ, ସେ ଜୀବାତ୍ମା ନୁହେଁ । ସୁତରାଂ ଯେ ଚିର ପରିବର୍ତ୍ତନଶୀଳ, ଗତିଶୀଳ ଘଟନା-ସ୍ରୋତ ବହି ଯାଉଅଛି, ତାହା ଜଗତ, ତାହା ଅନିତ୍ୟ । ଯାହା ଜନ୍ମ ହୁଏ ନାହିଁ, ମରେ ନାହିଁ, ଯାହା ଏହି ଗତି ମଧ୍ୟରେ ସ୍ଥିର, ଚିର ତାହାହିଁ ନିତ୍ୟ । ନିତ୍ୟ-ସ୍ୱରୂପ ମନୁଷ୍ୟ ଅନ୍ତରରେ ସତତ ବିରାଜିତ । କିନ୍ତୁ କେବଳ ମୋ ଅନ୍ତରରେ କିମ୍ବା ତୁମ୍ଭ ଅନ୍ତରରେ ନୁହେଁ, ସାରା ପୃଥିବୀର ପରିବର୍ତ୍ତନ ପଶ୍ଚାତରେ ଏହି ଅପରି-ବର୍ତ୍ତନୀୟ ସତ୍ତା ସ୍ଫୁରିତ । ଏହି ନିତ୍ୟ ଆତ୍ମା ବା ଆତ୍ମାର ସମଷ୍ଟି ପରମାତ୍ମା-ଜୀବର ଓ ବସ୍ତୁ ସକଳର ମୂଳ ଆଶ୍ରୟ । ଏହାଙ୍କ ବ୍ୟତୀତ ସୃଷ୍ଟି ପର୍ଯ୍ୟାୟ ସମ୍ଭବପର ନୁହେଁ । ଏହି ନିତ୍ୟ-ଜ୍ଞାନହିଁ ଶ୍ରେଷ୍ଠ ସତ୍ୟ ଜ୍ଞାନ । ଏହି ନିତ୍ୟତ୍ୱ 'ଅନିତ୍ୟ' ପଶ୍ଚାତରେ ଉପଲବ୍ଧି କରିବାହିଁ ଶ୍ରେଷ୍ଠ ଉପଲବ୍ଧି । ମନୁଷ୍ୟ ଏହି ସତ୍ୟ ଗଭୀର ଭାବରେ ଉପଲବ୍ଧି କଲେ, ସେ ଆଉ ମୃତ୍ୟୁ, ବ୍ୟାଧି, ଜରା-ଯନ୍ତ୍ରଣାରେ ବ୍ୟସ୍ତ ହୁଏ ନାହିଁ । ସେ ବିରହରେ ବ୍ୟସ୍ତ, ବିଚ୍ଛେଦରେ ବ୍ୟଥିତ କିମ୍ବା ମୃତ୍ୟୁରେ ମର୍ମାହତ ହୁଏ ନାହିଁ । ଏହିସବୁ ଦୁଃଖ ପାଇଁ

ଅଥ ମାନସିକ ସ୍ଫୁର୍ତ୍ତି ଉଦ୍ବୋଧନାହିଁ । ଅଜ୍ଞାନ ତାହାକୁ ପ୍ରଭାବିତ କରିପାରେ ନାହିଁ ।

ଏହି 'ଅପରିବର୍ତ୍ତନୀୟ ବାଣୀ' ଶ୍ରବଣ' ମନନ ଓ ଏହାର ଗମ୍ଭୀର ଉପଲବ୍ଧି ହିଁ ଜୀବନର ଶ୍ରେଷ୍ଠ ଅନୁଭୂତି ବା ଉପଲବ୍ଧି । ଅବଶ୍ୟ ଏହା ସାଧନା-ସାପେକ୍ଷ । ମୂଳରୁ ଏହି 'ବିଶ୍ୱ-ବୋଧ' ମାନସିକ ଜଗତରେ ହେବା ବାଞ୍ଛନୀୟ । ଅପରିବର୍ତ୍ତନୀୟର ବାଣୀ ବିଶ୍ୱ-ବୋଧର ପୂର୍ଣ୍ଣତମ ବାଣୀ । ସତ୍ୟରୁ ବୃହତ୍ତର ସତ୍ୟକୁ ମନୁଷ୍ୟ ଗତି କରିପାରେ । ଅପରିବର୍ତ୍ତନୀୟ ସତ୍ୟ-ସତ୍ତ୍ୱ-ଗାମୀ ମନୁଷ୍ୟ କହିବ ନାହିଁ ଯେ ଜଗତ ମିଥ୍ୟା । ତାହା ନୁହେଁ ।

ବିଜ୍ଞାନ ଓ ଦର୍ଶନ ମଧ୍ୟରେ ଏକ ପାର୍ଥକ୍ୟ ପରିଦୃଷ୍ଟ । ଜଡ ପଶ୍ଚାତରେ ଏକ ମହାଚେତନାର ଧାରଣା ଦାର୍ଶନିକ ତତ୍ତ୍ୱ । ବୈଜ୍ଞାନିକ ଜଡରେ ଅବଦ୍ଧ । ଜଡ଼ ଜଡ଼ତ୍ୱ ଜ୍ଞାନ ପାଇ ନ ପାରେ । ଜଡ଼ଠାରୁ ଅଜ କିଛି ଚେତନ ଶକ୍ତିର ପ୍ରୟୋଜନ । ତାହାହିଁ "ମୁଁ" ବା ଆତ୍ମାର ମୂଳପିଣ୍ଡ । ଏହି ଆତ୍ମ-ଚେତନ ହିଁ ବିଶ୍ୱ-ଚେତନାର ଏକ ଅବିଚ୍ଛେଦ୍ୟ ଓ ଅ-ସ୍ୱତନ୍ତ୍ର ଅଂଶ ବିଶେଷ । ଆତ୍ମ-ଚୈତନ୍ୟ ଭଗ୍ନ ହୋଇପାରେ; କିନ୍ତୁ ଅବିଭକ୍ତ । ବିଶ୍ୱାତ୍ମାହିଁ ଅପରି-ବର୍ତ୍ତନୀୟ । ଏହା କିନ୍ତୁ ବିଶ୍ୱ କର୍ମ ମଧ୍ୟରେ ସ୍ଫୁରିତ । ସ୍ୱେ ବିଶ୍ୱସ୍ପନ୍ଦନଦାତା ତାହାଙ୍କ ସ୍ପନ୍ଦନରେ ସକଳ ସୃଷ୍ଟି ସ୍ପନ୍ଦିତ । ସେ ସ୍ୱପ୍ନ ଦେଖାନ୍ତି ବୋଲି; ଅନ୍ୟମାନେ ସ୍ୱପ୍ନ ଦେଖନ୍ତି । କିନ୍ତୁ ସେହି ଅକ୍ରିୟ, ନିର୍ଗୁଣ ବିଶ୍ୱାତ୍ମା କିପରି କ୍ରିୟାଶୀଳ ହୁଅନ୍ତି ଏବଂ ଗୁଣ ଗ୍ରହଣ କରନ୍ତି, ତାହା ଚିର ଅବୁଝା ପ୍ରଶ୍ନ— ଏହା ଅନିର୍ବଚନୀୟ—ତେଣୁ ମାୟା ···ଲୀଳା··· ।

କିନ୍ତୁ ଏହି ଅପରିବର୍ତ୍ତନୀୟର ବାଣୀ ଉପଲବ୍ଧି କରିବାହିଁ ଶ୍ରେଷ୍ଠ ତାର୍ଥ । ଏହା ପ୍ରାଣରେ ବିଶ୍ୱ-ବୋଧ ଦିଏ । ଆତ୍ମମାନଙ୍କ ଅନିତ୍ୟ-ସ୍ୱପ୍ନକୁ ନିତ୍ୟ-ଆଲୋକରେ ରଞ୍ଜିତ କରେ । ବ୍ୟବହାରିକ ଜଗତରେ ଥିବାଯାଏ, ଆମ୍ଭେମାନେ ଜଗତକୁ ଅପରିବର୍ତ୍ତନୀୟର ଏକ ଲୀଳାଭୂମି ବୋଲି ଏହାକୁ ବେଶୀ ଶ୍ରଦ୍ଧା କରିବା ଉଚିତ; ଏବଂ ସେ ନ ଥିଲେ ଏ ନ ଥାନ୍ତା—ଏହି ଦୃଷ୍ଟିରେ ଆମର ସକଳ କର୍ମ ନିୟନ୍ତ୍ରିତ ହେବା ବାଞ୍ଛନୀୟ । ତାହାହେଲେ ମନୁଷ୍ୟ କ୍ଷଣିକ, ପରିବର୍ତ୍ତିତ, ଗତି, ଶୈଳତାରେ ବ୍ୟସ୍ତ ହେବ ନାହିଁ; ତାହାର ପ୍ରାଣ ମଧ୍ୟ ଏହି ପରିବର୍ତ୍ତନ-ପ୍ରବାହରେ ଅପରିବର୍ତ୍ତନୀୟର ସନ୍ଧାନ ପାଇବ । ଏହାହିଁ ଭେଦ-ଅଭେଦ, ରୂପ-ଅରୂପ, ନିତ୍ୟ-ଅନିତ୍ୟ ଚିନ୍ତାର ମୂଳ-

ଚିଣ୍ଡ । କର୍ମ ପରିବର୍ତ୍ତନଶୀଳ; କର୍ମୀ ଅପରିବର୍ତ୍ତନୀୟ । କର୍ମ ମଧ୍ୟ ଏକ ଦିଗରୁ ଅପରିବର୍ତ୍ତନୀୟ । କର୍ମ କର୍ମୀର—ମୁଁ ଓ ବିଶ୍ୱର ଏହି ଗୂଢ଼ ସମ୍ବନ୍ଧ ଯେବେ ଭଲ ଭାବରେ ଉପଲବ୍ଧି କଲେ, ମନୁଷ୍ୟ କେବେ ଭ୍ରମରେ ପଡ଼େ ନାହିଁ ।

---

# ଜୀବନପୂଜା

ଜୀବନ ଏକ ପୁଷ୍ପ । ଫୁଲ ସଙ୍ଗେ ଜୀବନକୁ ତୁଳନା କରିବାର ଏକ ତାତ୍ପର୍ଯ୍ୟ ଅଛି । କୋମଳ ପୁଷ୍ପ-କଳିକାର ବିକାଶ ନାନା ଜଟିଳତା ମଧ୍ୟରେ ମଣିଷ ଜୀବନ ଭଳି ସମ୍ଭବପର । ନୀଳ ଆକାଶର ସ୍ନିଗ୍ଧ ରଶ୍ମି, ବାୟୁ, ତାପ ଓ ମୃତ୍ତିକା ଏ ସବୁର ସୁସମାବେଶରେ ଫୁଲ ଫୁଟେ; ତାହାର ସୁବାସ, ରଙ୍ଗ ବିଶ୍ୱ ଚିତ୍ତକୁ ହରଣ କରେ । ପୁଷ୍ପ ଜୀବନର ଏହି ସକଳ ବିଭାଗର ପର୍ଯ୍ୟାୟ ମଧ୍ୟରେ ପୁଷ୍ପର ସାର୍ଥକତା କେଉଁଠି ? ପୁଷ୍ପ-ଜୀବନର ଏକ ଲକ୍ଷ୍ୟ ଅଛି । ବିଶାଳ ପ୍ରକୃତିକୁ ଲକ୍ଷ୍ୟକଲେ ଜଣାଯାଏ ଯେ, ନିଃସ୍ୱାର୍ଥ ଭାବହିଁ ପ୍ରକୃତିର ବଡ଼ ଧର୍ମ । ଫୁଲ ଫୁଟେ, ତାରା ଉଠେ, ସୂର୍ଯ୍ୟ ବୁଡ଼େ, ଚନ୍ଦ୍ର ଜ୍ୟୋସ୍ନା ଢାଳେ, ବୃକ୍ଷ ଛାୟା ପ୍ରଦାନ କରେ । ଏହି ସମସ୍ତ ପ୍ରାକୃତିର କର୍ମ ପ୍ରବାହର ପଶ୍ଚାତରେ ଆମ୍ଭେମାନେ କଅଣ ଦେଖୁ ? ଆମ୍ଭେମାନେ ଦେଖୁଁ ସୃଷ୍ଟିର ମଙ୍ଗଳ ପାଇଁ ସମସ୍ତେ ଯେପରି କର୍ମ-ରତ ! ସୃଷ୍ଟି ଲାଗି ଏହି ନିଃସ୍ୱାର୍ଥ କର୍ମହିଁ ସେମାନଙ୍କର ପୂଜା ।

ପୂଜା କହିଲେ କେବଳ ଫୁଲ, ଚନ୍ଦନ, ଧୂପ, ଦୀପ ଘେନି ଅନ୍ଧକାର ମନ୍ଦିରରେ ବସି ପାଷାଣ-ଦେବତା ପାଖରେ ମନ୍ତ୍ର ପଢ଼ିବା ବୁଝାଏ ନାହିଁ, କିମ୍ବା ଗଛ, ପାହାଡ଼ ତଳେ ପଥର ଗଠିତ ଦେବାଦେବୀଙ୍କ ସମ୍ମୁଖରେ ଛାଗ ବଳି ବୁଝାଏ ନାହିଁ । ପୂଜାର ଏକ ଗଭୀର ତାତ୍ପର୍ଯ୍ୟ ଅଛି । ପୂଜା ଜୀବନ ସହିତ ଗଭୀର ଭାବରେ ସଂପୃକ୍ତ । ପ୍ରେମ ଜୀବନର ଏକ କ୍ଷଣିକ ସ୍ପନ୍ଦନ ନୁହେଁ । ଏହା ପ୍ରାଣର ପ୍ରତି ତନ୍ତ୍ରୀରେ ଜଡ଼ିତ । ଏହି ଶୁଭ ସ୍ପନ୍ଦନ ଶିରାପ୍ରଶିରାରେ ପ୍ରବାହିତ । ପ୍ରେମର ମୂଳରେ ନିଃସ୍ୱାର୍ଥ ଭାବ । ପ୍ରେମର ପ୍ରତିଷ୍ଠା ଆତ୍ମ-ତ୍ୟାଗ ଓ ଆତ୍ମାବିସ୍ମୃତିରେ । ପ୍ରେମ ଅନ୍ତଃକରଣ ଶୂନ୍ୟ କରାଏ । ପ୍ରେମ କ୍ଷଣିକ ରୂପ-ଅନ୍ଧ-ଉତ୍ତେଜନାର ଭାବପୁଞ୍ଜ ନୁହେଁ । ପ୍ରକୃତ ପ୍ରେମରେ ଅନ୍ତରମାନବ ଗଭୀର

ଭାବରେ ଅଭିବ୍ୟକ୍ତ ହୁଏ । ଯେପରି ଜଳମାନଙ୍କରେ ଲବଣ କମ୍ବା ମିଷ୍ଟାନ୍ନ ଦଣିବା ମିଳାଇ ଯାଏ ଏବଂ ସକଳ ଜଳକୁ ଲୁଣିଆ ବା ମଧୁର କରେ, ସେହିପରି ପ୍ରକୃତ ପ୍ରେମ ମାନବ ଅନ୍ତରକୁ ମଧୁର କରେ । ଏହା ଅଦୃଶ୍ୟ ଭାବରେ ଅନ୍ତର-ମାନବକୁ ଗଭୀର ରଙ୍ଗରେ ରଞ୍ଜିତ କରେ । ପ୍ରେମ ଦେଇ ମନୁଷ୍ୟ ସତ୍ୟର ସମ୍ମୁଖୀନ ହୁଏ ।

ମଣିଷ ଜୀବନର ନାନା ଜଟିଳତା ମଧ୍ୟରେ ମନୁଷ୍ୟ ନାନା ଭାବରେ, ନାନା କର୍ମରେ, ନାନା ଅନୁଭୂତି ଦେଇ ଏହି ବିଶ୍ୱର ଶ୍ରେଷ୍ଠ ବାଣୀ ଅନୁଭବ କରିବାକୁ ବ୍ୟଗ୍ର ଏବଂ ଜୀବନଟା ଏହି ଅନ୍ୱେଷଣରେ ହିଁ ଆରମ୍ଭ ଓ ଶେଷ । ପ୍ରତ୍ୟେକ ଜୀବନ-ମନ୍ଦିରର ଏକ ଦେବତା ରହିବା ସମୀଚୀନ । ପ୍ରଶ୍ନ ଉଠିଥାଏ—ଜୀବନ-ମନ୍ଦିରର ଅଧିଷ୍ଠ ଦେବତା କିଏ ହେବ ? ସତ୍ୟ ଜୀବନର ସବୁଠାରୁ ବଡ଼ ଦେବତା । ସତ୍ୟ ପ୍ରକାଶ ସୃଷ୍ଟିରେ ସର୍ବଦା ହେଉଅଛି । ଯଥାସମ୍ଭବରେ ସୂର୍ଯ୍ୟ ରଶ୍ମି ଦାନ କରନ୍ତି, ଚନ୍ଦ୍ର ଶୁଭ୍ର ଜ୍ୟୋତ୍ସ୍ନାଦାନରେ ଧରଣୀକୁ ପ୍ଳାବନ କରନ୍ତି, ଶସ୍ୟ କେଦାରରେ ପରିଶୋଭିତ ହୋଇ ଜଗତ-ଜନଙ୍କର ଜୀବନ ଧାରଣରେ ପ୍ରଭୃତ ସାହାଯ୍ୟ କରେ । ବୃକ୍ଷ ଲତା ଫଳ-ପୁଷ୍ପବତୀ ହୁଅନ୍ତି, ସର୍ବ ଏକ ସତ୍ୟ-ନିୟମର ପ୍ରକାଶ ମାତ୍ର । ଏକ ମୂଳ ସତ୍ୟ ନଥିଲେ, ଏହି ବିକାଶ ସମ୍ଭବପର ହୋଇ ପାରନ୍ତା ନାହିଁ । ମନେ କରନ୍ତୁ ଶିଳ୍ପୀର ସୁନ୍ଦର ଚିତ୍ର ଅଙ୍କନ୍ତି । କିନ୍ତୁ ପଟ ଚିତ୍ର ଅଙ୍କିବାର ଆଧାର ନ ଥାନ୍ତା ଚିତ୍ର ଅଙ୍କାଯାଆନ୍ତା କିପରି ? କେବଳ ଆଧାର ନୁହେଁ, ଶିଳ୍ପୀର ବିନା ଚିତ୍ର ଅଙ୍କିବ କିଏ ? ସୃଷ୍ଟି, ଶିଳ୍ପୀର ଓ ଚିତ୍ର ଅଙ୍କିବାର ଉପକରଣ ସମସ୍ତ ଏକ ମୂଳ ସତ୍ୟରୁ ଉଦ୍ଭବ; ତାହାହିଁ ସୃଷ୍ଟିର ମୂଳାଧାର ସତ୍ୟ ।

ଯୁଗ ଯୁଗ ଧରି ମନୁଷ୍ୟ ଏହି ବିଶ୍ୱର ବୈଚିତ୍ର୍ୟ, ବିଭିନ୍ନତା ଓ ଚଞ୍ଚଳତା ଦେଖି ସନ୍ତୁଷ୍ଟ ହୋଇ ପାରି ନାହିଁ । ତାହା ମନରେ ସ୍ୱତଃ ପ୍ରଶ୍ନ ଉଠିଛି ଏବଂ ସେ ଏହି ସୃଷ୍ଟିର ଏକ ମୂଳାଧାର ଚିନ୍ତାରେ ବ୍ୟାକୁଳ ହୋଇ ଉଠିଛି । ଯୁଗ ଯୁଗ ଧରି ଦ୍ରଷ୍ଟା ବା ଦାର୍ଶନିକମାନେ ସତ୍ୟ-ସମ୍ପର୍କରେ ନାନା ପ୍ରକାର ତର୍କ ବାଢ଼ି ଅଛନ୍ତି ।

ଅଦ୍ୱୈତ, ବିଶିଷ୍ଟାଦ୍ୱୈତ ଯେ କୌଣସି ବାଦୀ ମନୁଷ୍ୟ ହୋଇପାରେ । ପ୍ରତ୍ୟେକ ବାଦ ପ୍ରତ୍ୟେକର ପ୍ରତିକୂଳ ନୁହେଁ; ଅନୁକୂଳ । ପ୍ରତ୍ୟେକ ପ୍ରତ୍ୟେକର ପରିପୂରକ । କିନ୍ତୁ ଏତିକି ମନେ ପକାଇଦେବାର କଥା ଯେ, ଏକ

ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଅନନ୍ତ, ଅବ୍ୟକ୍ତ, ଅସୀମ ଐଶୀ ସତ୍ତା ସର୍ବତ୍ର ପରିବ୍ୟାପ୍ତ; ଏହା ମୋର ଗଭୀର ବିଶ୍ୱାସ । ଏହାକୁ ନାନା ଭାବରେ ନାନା ଦ୍ରଷ୍ଟା ଆଖ୍ୟା ଦେଇଅଛନ୍ତି । ନାମରେ ବେଶି କିଛି ଯାଏଆସେ ନାହିଁ । ମୂଳାଧାରହିଁ ସତ୍ୟ, ଚିର ଓ ଅସୀମ । ଏହା ଅମୃତ । ଏହା ଦେଶ, କାଳ ଓ ପାତ୍ରର ଅଧୀନ ନୁହେଁ, ପୁଣି ସେହି ଅସୀମ ସତ୍ୟର ଏକ ପ୍ରକାଶ ହୋଇଛି ଏହି ଦେଶ, କାଳ ଓ ପାତ୍ରର ସୀମା ମଧ୍ୟରେ ।

ଅସୀମ-ସସୀମ, ଅରୂପ-ରୂପ, ନିତ୍ୟ-ଅନିତ୍ୟର ଏକ ମଧୁର ସମ୍ପର୍କ ଅଛି । ଯେଉଁମାନେ ସୀମା, ରୂପ, ଅନିତ୍ୟକୁ ପୂର୍ଣ୍ଣ ହେୟ ଦୃଷ୍ଟିରେ ଦେଖନ୍ତି, ସେମାନଙ୍କ ସହିତ ମୁଁ ଏକମତ ନୁହେଁ । ବ୍ୟାବହାରିକ ଜଗତରେ ଥିବାଯାଏ ଆମ୍ଭେମାନେ ନାମ ରୂପ ଜଗତକୁ ଛାଡ଼ି ପାରିବା ନାହିଁ । ପ୍ରଜ୍ଞାମୂଳକ ଭୂମିରେ ଅଦ୍ୱୈତହିଁ ବିଦ୍ୟମାନ ।

ବିଶ୍ୱ ଦର୍ଶନରେ ଅର୍ଥାତ୍ ମାନବିକ ଚିନ୍ତା-ରାଜ୍ୟରେ ଏକ ଅମୀମାଂସିତ ପ୍ରଶ୍ନ ଚିରଦିନ ସକାଶେ ରହିଯାଇଛି, ତାହା ହେଉଛି ଯେ,ଅସୀମ ଅରୂପ, ତାହାଙ୍କ ରୂପସୀମା ମଧ୍ୟରେ ବ୍ୟକ୍ତ ହେଲେ ? ଏହି ବିଷୟରେ ଭାବୁକମାନେ ନାନା ଭାବରେ ଭାବି ଅଛନ୍ତି । କେହି ମାୟା, ଅବିଦ୍ୟା ବା 'ସର୍ପରଜ୍ଜୁ ଭ୍ରମ'ର କଥା ଉଠାଇ ଅଛନ୍ତି; ତଥାପି ଏହାର ଏକ ଆଶାଜନକ ଉତ୍ତର ମିଳିନାହିଁ, ସମାଧାନ ହୋଇ ନାହିଁ । କାରଣ ମନୁଷ୍ୟର ନିଜ ମନ ସୀମାବଦ୍ଧ । ମନୁଷ୍ୟର ଚିନ୍ତା-ଶକ୍ତି ସୃଷ୍ଟିର ଶ୍ରେଷ୍ଠ ଜ୍ଞାନ ଏହି ବ୍ୟାବହାରିକ ଜଗତରେ ଲାଭ କରିବାକୁ କ୍ଷମ ହୋଇ ନାହିଁ; ତେଣୁ ଜୀବନରେ ଅନ୍ୟ ଧରଣର ପୂଜାର ପ୍ରୟୋଜନ ହୋଇଅଛି । ତାହାହିଁ ପ୍ରଜ୍ଞାନୁଭୂତ (Intitutive-knowledge) । ଏହାହିଁ ଆମ୍ଭମାନଙ୍କୁ ଶ୍ରେଷ୍ଠ ସତ୍ୟ ଜ୍ଞାନ ଦେବାକୁ କ୍ଷମ । ପୁସ୍ତକର କେବଳ ବର୍ଣ୍ଣନରେ ସୂକ୍ଷ୍ମ ବିଷୟରେ ଆମ୍ଭମାନଙ୍କର ଯଥେଷ୍ଟ ଜ୍ଞାନ ମିଳି ନପାରେ । ସତ୍ୟର ଯଥାର୍ଥ ଅନୁଭୂତି ଦ୍ୱାରା ମନୁଷ୍ୟର ଗଭୀର ଧାରଣା ସମ୍ଭବପର । ତେଣୁ ସତ୍ୟ ବୁଝିବାକୁ ହେଲେ, ତାହା ସହିତ ଆମ୍ଭମାନଙ୍କୁ ଏକ ହେବାକୁ ହେବ । ଏହାହିଁ ଯୋଗ । କିନ୍ତୁ ସେହି ଶ୍ରେଷ୍ଠ ଅନୁଭୂତି ସମସ୍ତଙ୍କ ଜୀବନରେ ସମ୍ଭବପର ହୁଏ ନାହିଁ । ତେଣୁ ମଣିଷ ଅନ୍ୟ ଭାବରେ ସତ୍ୟକୁ ନତମସ୍ତକରେ ମାନିନେଇ ତାହାର ଜୀବନର ପୂଜା ଆରମ୍ଭ କରେ । ଜୀବନ ପୂଜାରେ ଆମ୍ଭେମାନେ ତିନୋଟି ମାର୍ଗ ପାଉଁ । ତାହା ଜ୍ଞାନ, ଭକ୍ତି ଓ କର୍ମ । ଏହା ବ୍ୟତୀତ ରାଜଯୋଗ ବା ଯୋଗୀର ଧ୍ୟାନମାର୍ଗ ଅଛି । ଜୀବନର ପୂଜ୍ୟ ଦେବତା ସତ୍ୟ । ତାହା ମୋଠାରୁ ଭିନ୍ନ କି ବା

ବିଭକ୍ତ ନୁହେଁ । ମୁଁ ଓ ବିଶ୍ୱ ସତ୍ୟର ଏକ ପ୍ରକାଶ । "ମୁଁ-ଜ୍ଞାନ" ସନ୍ଦେହବାଦୀର ମଧ୍ୟ ମୂଳପିଣ୍ଡ; ଅର୍ଥାତ୍ 'ମୁଁ' ବା ଆତ୍ମଜ୍ଞାନ ସ୍ୱତଃସିଦ୍ଧ ଏବଂ ଏହାର ଅନ୍ୟ ପ୍ରମାଣ ଲୋଡ଼ା ନାହିଁ । ପୁଣି ସେହି 'ମୁଁ'ର ଆମ୍ଭେମାନେ ଯେତେବେଳେ ଏକ ବିରାଟ—ବ୍ୟାପକ ଚିନ୍ତା କରୁଁ, ସେତେବେଳେ ବିଶ୍ୱଆତ୍ମା କି ପରମାତ୍ମା ଜ୍ଞାନ ପାଉଁ । 'ଆତ୍ମା' ମାନିଲେ ପରମାତ୍ମା ମାନିବାକୁ ବାଧ୍ୟ । ପରମାତ୍ମା ମାନିଲେ ଆତ୍ମା ମାନିବାକୁହିଁ ପଡ଼ିବ ।

କିନ୍ତୁ ଏହି ସମ୍ୟକ୍ ଶ୍ରେଷ୍ଠ ଜ୍ଞାନହିଁ ଆମ୍ଭମାନଙ୍କ ଧର୍ମ-ଭୂମିର ଭିତ୍ତି । ଏହାହିଁ ମନୁଷ୍ୟକୁ ନୈତିକ-ଜୀବନର ଏକ ସୁଦୃଢ଼-ଭିତ୍ତି ଦେବାକୁ କ୍ଷମ । ଅଦ୍ୱୈତବାଦ ଏଥିପାଇଁ ହିନ୍ଦୁ ଜୀବନର ଏକ ମୁଖ୍ୟ ଓ ଶ୍ରେଷ୍ଠ ଦର୍ଶନ । ଅଦ୍ୱୈତ ଚିନ୍ତା ନୀତି ଲାଗି ମାର୍ଗ ପରିଷ୍କାର କରିଅଛି । ଜଗତରେ ପୂର୍ଣ୍ଣଚନ୍ଦ୍ର ରାମଚନ୍ଦ୍ରଙ୍କୁ କାହିଁକି ଭଲ ପାଇବ ? କାହିଁକି ଯଦୁନାଥ, ମଧୁସୂଦନଙ୍କର ଅନିଷ୍ଟ ସାଧିବ ନାହିଁ ? କାହିଁକି ହିଂସା, ଦ୍ୱେଷ ଓ ପରଶ୍ରୀକାତରତା ମନ୍ଦ; ଆଉ ପ୍ରେମ, ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା ମଙ୍ଗଳ-ଦାୟକ; କାରଣ ଆମ୍ଭେମାନେ ସମସ୍ତେ ଏକ । ରାଜା, ପ୍ରଜା, ଧନୀ, ନିର୍ଦ୍ଧନ, ନର, ନାରୀ, ଆର୍ଯ୍ୟ, ଅନାର୍ଯ୍ୟ, ବ୍ରାହ୍ମଣ ଓ "ଡୋମ" ସମସ୍ତେ ଏକ ସତ୍ୟର ବିକାଶ ମାତ୍ର । ସେହି ଏକହିଁ ବହୁ ରୂପରେ ପ୍ରତିଭାତ । ଏହା ମୋର ଗଭୀର ବିଶ୍ୱାସ ଏବଂ ଏହି ଅନୁଭୂତି ସଙ୍ଗରେ ମୋର ସକଳ ଚିନ୍ତା ରଞ୍ଜିତ ବୋଲି ମୁଁ ବିଶ୍ୱରେ ଅଖଣ୍ଡ ଆନନ୍ଦ ଓ ମଧୁର ମାନସିକ ଶାନ୍ତି ପାଇପାରୁ ଅଛି ।

ତେଣୁ ଜୀବନ ଶୃଙ୍ଗାର ମୂଳମନ୍ତ୍ର ଏହି ଏକତ୍ୱବୋଧ । ବିଶ୍ୱବୋଧ ବ୍ୟତୀତ ମାନବର ପ୍ରାଣ ପ୍ରସାରିତ ହୋଇ ନପାରେ । ଜ୍ଞାନ ସର୍ବଦା ବିଶ୍ୱବ୍ୟାପୀ । ସତ୍ୟ ଖଣ୍ଡ-ଦେଶ; କାଳ, ସୀମା ଆବଦ୍ଧ ନୁହେଁ । ସତ୍ୟ ସତ୍ୟ ହେବାକୁ ହେଲେ ଏହା ଅଖଣ୍ଡ ଓ ବିଶ୍ୱବ୍ୟାପୀ ହେବା ଉଚିତ । କିନ୍ତୁ ବିଶ୍ୱବୋଧ କେବଳ କ୍ଷୟଶୀଳ ବସ୍ତୁ ସକଳକୁ ନେଇ ନୁହେଁ; ଏକ ଅକ୍ଷୟ ଅମୃତ ଶକ୍ତିକୁ ଆଶ୍ରା କରି । ତେଣୁ ଉପନିଷଦ୍‌ର ଆତ୍ମଦର୍ଶନ ଯୁଗ ଯୁଗ ପରେ ବିଶ୍ୱଚିତ୍ତରେ ତାହାର ପ୍ରଭାବ ବେଶୀ ପ୍ରସାର କରିପାରୁ ଅଛି; କମ୍ ନୁହେଁ । ବହୁ ଆର୍ତ୍ତ, ବହୁ ଦୁଃଖୀ ଏହି ଆତ୍ମ-ଦର୍ଶନତତ୍ତ୍ୱରୁ ଭୋର ଆନନ୍ଦାମୃତ ଓ ଅମର-ଆଶା ଲାଭ କରିପାରୁ ଅଛନ୍ତି । ଏହି ଉଚ୍ଚ ଦର୍ଶନ ଉପରେହିଁ ସୁସଂସ୍କୃତି ସମ୍ଭବପର । ସୁଦର୍ଶନ ବିନା ସଂସ୍କୃତିର ଉନ୍ନତି ଅସମ୍ଭବ

ମନୁଷ୍ୟ ଏକ ଅନିସ୍ପୃ ଜୀବ ନୁହେଁ । ଆମ୍ଭେମାନେ ଅଦମ୍ୟ, ଅକ୍ଲାନ୍ତ କର୍ମୀ । କର୍ମର ପାର୍ଥକ୍ୟ ହୋଇପାରେ । ସେଥିରେ ବିଶେଷ କିଛି

ଯାଏ ଅସେ ନାହିଁ । ମାନବ ତଥା ବିଶ୍ୱ ଅନ୍ତର୍ନିହିତ ଦେବତ୍ୱରେ ବିଶ୍ୱାସ ଜୀବନ ପୂଜାର ପ୍ରଥମ ମନ୍ତ୍ର । ଦ୍ୱିତୀୟ ମନ୍ତ୍ର ହେଉଛି—କର୍ମ ।

କର୍ମ-ନିୟମ ଏକ ଚମତ୍କାର ନିୟମ । ଏହି ନିୟମ ସ୍ୱଚ୍ଛଳିତ । ମଣିଷ ଏହା ଦ୍ୱାରା ବନ୍ଦୀ ନ ହୋଇ ମୁକ୍ତ ଜୀବନ ଯାପନ କରିବାର ସନ୍ଧାନ ଲାଭକରି ପାରନ୍ତି । ମୁଁ ଯେପରି କର୍ମ କରିବି ସେହିପରି ଫଳ ଭୋଗ କରିବି । ଯଦି ମୋର କର୍ମ ମନ୍ଦ, ଫଳ ମନ୍ଦ—ଅର୍ଥାତ୍ ପାପ; ଯଦି ମୋର କର୍ମ ଭଲ, ତେବେ ଫଳ ଶୁଭ ଅର୍ଥାତ୍ ପୁଣ୍ୟ । କର୍ମ ନିୟମ ବଡ଼ ସଂକ୍ଷିପ୍ତ, ସରଳ; କିନ୍ତୁ ଏହାର ଫଳ ବଡ଼ ଗମ୍ଭୀର ଓ ସୁବିସ୍ତୃତ । ସକଳ ସୃଷ୍ଟି ଏହି କର୍ମ-ନିୟମଦ୍ୱାରା ସୁନିୟନ୍ତ୍ରିତ । ବୃକ୍ଷ, କୀଟ, ମନୁଷ୍ୟ ଓ ପଶୁ ସମସ୍ତେ କର୍ମ-ନିୟମଦ୍ୱାରା ଚାଳିତ । ଯେଉଁମାନେ ଜୀବନରେ ପ୍ରକୃତ ସତ୍ୟର ପୂଜାରୀ ହେବାକୁ ଚାହାନ୍ତି, ସେମାନେ ଜାଣି ରଖିବା ଉଚିତ ଯେ, ଜୀବନରେ ସଂସାରର ଶ୍ରେଷ୍ଠ ବ୍ୟକ୍ତି ଧନେ ନିର୍ଦ୍ଦମାର କୀଟ ହୋଇ ପାରନ୍ତି, ଅଉ କୀଟ ଧନେ ସଂସାରରେ ଶ୍ରେଷ୍ଠ ବ୍ୟକ୍ତି ହୋଇପାରେ । ସକଳ ବିବର୍ତ୍ତନ (Evolution) କର୍ମ ଉପରେ ନିର୍ଭର କରେ ।

କୌଣସି ମନୁଷ୍ୟ ସର୍ବଦା ମନ୍ଦ କର୍ମ କରି କହି ନ ପାରେ ଯେ, ଇନ୍ଦ୍ର କିମ୍ବା ମନୁଷ୍ୟ ହୋଇ ରାଜ ଭୋଗ କରି ପାରିବ । କେହି ଦୁଃଖୀ, ଦରିଦ୍ର ସୁକର୍ମ କରି ହତାଶ ନହେଉ ଯେ, ତାହାର ସକଳ ସୁକର୍ମ ନିରର୍ଥକ । ଅମ୍ଭ-ମାନଙ୍କ ଆଗରେ ବାହାରୁ ଦେଖାଯାଉଥିବା ଜୀବନର ମୂଲ୍ୟ ପ୍ରକୃତ ଜୀବନର ମୂଲ୍ୟଠାରୁ ସ୍ୱତନ୍ତ୍ର ହୋଇପାରେ । ଯାହା ଚକ୍ ଚକ୍ ଦେଖାଯାଏ, ତାହା ସବୁ କ୍ଷେତ୍ରରେ ସୁନା ନୁହେଁ । ଧ୍ରୁବ ଅମ୍ଭେମାନେ ଯେତେବେଳେ ରେଲଗାଡ଼ିରେ ଯାଉଥାଉଁ ଅମ୍ଭମାନଙ୍କୁ ଜଣାପଡ଼ୁଥାଏ ଯେ, ରେଲ ସ୍ଥିର, ଗଛ, ଲତା, ଗ୍ରାମ ଓ ଘର ଗତିଶୀଳ । କିନ୍ତୁ ପ୍ରକୃତରେ ତାହା ନୁହେଁ । ସେହିପରି ଅନେକ ସମୟରେ ଅମ୍ଭେମାନେ ମନୁଷ୍ୟର ସାମାଜିକ ପ୍ରତିପତ୍ତି, ବିଳାସ, ସୁଖ-ସ୍ୱାଚ୍ଛନ୍ଦ୍ୟ ଦେଖି ଭାବୁଁ ଯେ, ଆହା—ସେମାନଙ୍କ ଜୀବନ କି ଲୋଭନୀୟ ! କିନ୍ତୁ କିଏ କହିବ ଏହି ଜୀବନର ପରିଣତି କଅଣ ହେବ ? ଏଥିପାଇଁ ପ୍ରତ୍ୟେକ ମନୁଷ୍ୟର ସତତ ସାବଧାନ ହେବା ଲୋଡ଼ା ଏବଂ ଅମ୍ଭ-ବିଶ୍ଳେଷଣ ପ୍ରୟୋଜନ । ରାଜା ଭର୍ତ୍ତୃହରି ଯେ କି ପରେ ସନ୍ନ୍ୟାସୀ ହୋଇ ଧ୍ରୁବ ତ ବିଶିଷ୍ଟାଦ୍ୱୈତ ବାଦ ପ୍ରଚାର କରିଥିଲେ, ସେ ପ୍ରଥମେ ରାଜା ଥିଲାବେଳେ ଭାବିଥିଲେ ଯେ, ତାହାଙ୍କ ରାଣୀ ତାହାଙ୍କୁହିଁ ଏକମାତ୍ର ପ୍ରାଣଠାରୁ ଅଧିକ ପ୍ରେମ କରନ୍ତି । ଭର୍ତ୍ତୃହରିଙ୍କ 'ଅମୃତଫଳ' ଉପାଖ୍ୟାନ ସୁବିଦିତ । ଜଣେ ଋଷି ଭର୍ତ୍ତୃହରି

ଭଲ ପାଉଥିଲେ ବୋଲି ତାହାଙ୍କୁ ଏକ ଅମୃତଫଳ ଦେଇଥିଲେ । ଋଷି-'ଅମୃତଫଳ' ଯଜ୍ଞରୁ ଲାଭ କରିଥିଲେ । ସେ ଫଳ ଯେ ଖାଇବ, ସେ ଚିର ଯୌବନ ଲାଭ କରିବ । ରାଜାଭର୍ତ୍ତୃହରି ଭାବିଲେ, ସନ୍ନ୍ୟାସୀଙ୍କ ପ୍ରଦତ୍ତ ଅମୃତ ଫଳ ସେ ତାହାଙ୍କ ପ୍ରିୟା ରାଜପତ୍ନୀଙ୍କୁ ଦେବେ; ସେ ଚିର-ଯୌବନ ପାଇବା ଉଚିତ । ପ୍ରେମର ପ୍ରତିଷ୍ଠା ଏହି ଆତ୍ମା ତ୍ୟାଗରେ । ରାଜପତ୍ନୀ ଧାର୍ମିକ ରାଜା-ଭର୍ତ୍ତୃହରିଙ୍କ ବ୍ୟତୀତ ଅନ୍ୟ ଏକ ରାଜ କର୍ମଚାରୀଙ୍କୁ ସୁଖ ପାଉଥିଲେ, ତେଣୁ ରାଜପତ୍ନୀ ସେହି ରାଜ କର୍ମଚାରୀଙ୍କୁ ଅମୃତ-ଫଳ ଉପହାର ଦେଲେ । ପୁଣି ସେହି ରାଜ କର୍ମଚାରୀ ରାଣୀଙ୍କ ବ୍ୟତୀତ ଏକ ବେଶ୍ୟାସକ୍ତ ଥିଲେ । ତେଣୁ ସେ ସେହି ଅମୃତଫଳ ନଗରର ଶ୍ରେଷ୍ଠ ଗଣିକାକୁ ଦେଲେ । ବେଶ୍ୟା କେବଳ ଧନ ଲାଗି ତାର ରୂପ ବିକି କରୁଥିଲା । ତାହାର ସେହି ରାଜ କର୍ମଚାରୀ ପ୍ରତି କିଛି ବିଶେଷ ପ୍ରୀତି ନଥିଲା ।

ସେ ଯାହା ହେଉ ବେଶ୍ୟା ଚିତ୍ତରେ ଧର୍ମଭାବ ଜାଗ୍ରତ ହେଲା । ସେ ଭାବିଲା, ଏକ ରୂପଜୀବୀ ଗଣିକା ଜଗତରେ ଅମୃତଫଳ କୃପାରୁ ଚିରଯୌବନ ଲାଭକରି କି ମଙ୍ଗଳ କରିବ; ତେଣୁ ସେ ଆଦର୍ଶ ପ୍ରଜାପାଳକ ରାଜାଭର୍ତ୍ତୃହରିଙ୍କୁ ସେହି ଅମୃତଫଳ ଉପହାର ସ୍ୱରୂପ ତାହାଙ୍କ ପାଦତଳେ ଭେଟି ଦେଲା । ରାଜା ଭର୍ତ୍ତୃହରି ଅମୃତଫଳର ଏହି ପରିଣତି ଦେଖି ସଂସାର ବିରାଗୀ ହୋଇ ସନ୍ନ୍ୟାସ ଅବଲମ୍ବନ କଲେ । ଗୃହ ବା ସଂସାର ଛାଡ଼ି ସନ୍ନ୍ୟାସୀ କେବଳ ହୋଇଗଲେ ଜୀବନ ପୂଜାର ସାର୍ଥକତା କିମ୍ବା ସାଫଲ୍ୟ ଘଟିବ ନାହିଁ । ଏହି ଉପାଖ୍ୟାନ ପଶ୍ଚାତ୍‌ରେ ଦେଖିବା ଉଚିତ ଯେ, ମନୁଷ୍ୟ କିପରି ଜୀବନରେ ଠକେ । ମନୁଷ୍ୟ ମନୁଷ୍ୟକୁ କିପରି ଠକାଏ ? ଯେଉଁ ପ୍ରେମ ମନୁଷ୍ୟକୁ ଦେବତା କରିପାରେ, ସେହି ପ୍ରେମର ଫଳରେ ପୁଣି ଅମୃତଫଳର କିପରି ଘୂର୍ଣ୍ଣନ ହୁଏ । ତେଣୁ ଯେଉଁମାନେ ଜୀବନର ପ୍ରକୃତ ପୂଜା କରିବେ, ସେମାନେ ଜଗତର ଏହି ପ୍ରକୃତ ଓ ସତ୍ୟର ସ୍ପଷ୍ଟ ଧାରଣା ମନରେ ରଖିବା ଉଚିତ । ତେଣୁ କର୍ମର ଏହି ସ୍ୱରୂପ ଓ ଦ୍ୱନ୍ଦ୍ୱ ଫଳ ପ୍ରତି ମନୁଷ୍ୟର ଲକ୍ଷ୍ୟଥିବା ବାଞ୍ଛନୀୟ । ଏହି କର୍ମକୁ ମୂଳ ଭିତ୍ତି କରି ଆମ୍ଭମାନଙ୍କର ସମାଜ, ରାଷ୍ଟ୍ର, ସାହିତ୍ୟ, କଳା ଓ ଗୀତ । ବିଶ୍ୱରେ ମାନବ ଏତ ଅବିଚ୍ଛିନ୍ନ, ଅବିଭକ୍ତ ଗୋଷ୍ଠୀ । ନାନା ଜାତୀୟତା, କ୍ଷୁଦ୍ର ପ୍ରାଦେଶିକତା ବା ସ୍ୱଦେଶିକତା ଦ୍ୱାରା ବିଶ୍ୱ ବିଚ୍ଛିନ୍ନ, ବିଭକ୍ତ । ଆମ୍ଭମାନଙ୍କର ଏହି ବିଭିନ୍ନତାକୁ ବିଚ୍ଛିନ୍ନତା ଦୃଷ୍ଟିରେ ନ ଦେଖି ବୈଚିତ୍ର୍ୟ ଦୃଷ୍ଟିରେ ଦେଖିବା ଉଚିତ ।

ବିଶ୍ୱ ମଙ୍ଗଳ ପାଇଁ ଅମ୍ଭମାନଙ୍କ କର୍ମ ଓ ଚିନ୍ତାର ନିୟନ୍ତ୍ରଣ ପ୍ରୟୋଜନ ।

ଜୀବନ ପୂଜାର ଆଧ୍ୟାତ୍ମିକ ଦିଗ ପରିତ୍ୟାଗ କରି ଏକ ସାମାଜିକ ବା ମାନବିକ ଭାବରେ ମଧ୍ୟ ଆଲୋଚନାର ସୂତ୍ରପାତ କରିଯାଇ ପାରେ । ସଂସାରରେ କ୍ଷୁଦ୍ର ମନୁଷ୍ୟ ସର୍ବଦା ସ୍ୱାର୍ଥ ପଛରେ ପ୍ରଧାବିତ । ସ୍ୱାର୍ଥ ପୂରଣ ନିମିତ୍ତ ସବୁ ବ୍ୟଗ୍ର । ସ୍ୱାର୍ଥ ନୁହେଁ, ନିଃସ୍ୱାର୍ଥହିଁ ଆନନ୍ଦ । ସୃଷ୍ଟି ମୂଳରେ ଏହି ନିଃସ୍ୱାର୍ଥ ଥାଏ ବୋଲି ପିତା ମାତାଙ୍କ ହୃଦୟରେ ପୁତ୍ର କନ୍ୟାଙ୍କ ଲାଗି ବାତ୍ସଲ୍ୟ ଥାଏ । ପ୍ରେମିକ ପ୍ରେମିକାଙ୍କ ପ୍ରାଣରେ ପ୍ରେମ ଥାଏ । ତେଣୁ ଜୀବନ ମଧୁର ଓ ଉପଭୋଗ୍ୟ । ହିଂସା ନୁହେଁ, ଅହିଂସାହିଁ ଆନନ୍ଦ । ପରାଜୟ ଦୁର୍ବଳତା ନୁହେଁ; ସତ୍ୟ ଲାଗି ସଂଗ୍ରାମ ଓ ଉଦ୍ୟୋଗହିଁ ପୁଣ୍ୟପ୍ରଦ । ସଂସାରରେ ଜନ୍ମ ଠାରୁ ମୃତ୍ୟୁ ଯାଏ ସାମାଜିକ ମାନବ ହୋଇ ରହନ୍ତୁ; କିମ୍ବା ପ୍ରାଚୀନ ଭାରତୀୟ ହିନ୍ଦୁଜୀବନର ଆଶ୍ରମ ଅନୁଯାୟୀ ଆଶ୍ରମ-ଜୀବନ ଯାପନ କରନ୍ତୁ, ସର୍ବଦା କ୍ଷୁଦ୍ର ସହିତ 'ବୃହତ୍ତର'ର ଏକ ସ୍ପଷ୍ଟ କଳ୍ପନା ମନରେ ଆଙ୍କି ରଖିବା ଉଚିତ । ଜାତୀୟତା, ବିଶ୍ୱବୋଧ ଦିଗରୁ କ୍ଷୁଦ୍ର ହେଲେ ମଧ୍ୟ, ବ୍ୟକ୍ତିର କ୍ଷୁଦ୍ର ସ୍ୱାର୍ଥ ଦୃଷ୍ଟିରେ ବୃହତ୍ତର ବୋଲି ମୁଁ ଏହାର ଅନେକ ସମୟରେ ପ୍ରଶଂସା କରେ । ବିଶ୍ୱଛଡ଼ା ସ୍ୱଦେଶ ମୋର ଲକ୍ଷ୍ୟ ନୁହେଁ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ । ଏହାର ଶେଷ ଶ୍ମଶାନରେ । ଏହାର ପରମାୟୁ କେତେଦିନ ? ପୁଣି ସେହି ବ୍ୟକ୍ତିଗତ ଜୀବନ ଯେତେବେଳେ ଜାତୀୟ ବୃହତ୍ତର ହିତରେ ବ୍ୟୟିତ ହୁଏ, ସେତେବେଳେ ବ୍ୟକ୍ତିଗତ ଜୀବନ କି ବୃହତ୍ ଓ ଉନ୍ନତ ହୋଇ ନ ଥାଏ । ଏହାବୋଲି 'କ୍ଷୁଦ୍ର' ପୂର୍ଣ୍ଣ ହେୟର ବସ୍ତୁ ନୁହେଁ । କ୍ଷୁଦ୍ରକୁ ଘେନି ବୃହତ୍, କ୍ଷୁଦ୍ରର ବିକାଶରେ ବୃହତ୍ତ୍ୱର ବିକାଶ । ଏହି ଦୃଷ୍ଟିରୁ ବ୍ୟକ୍ତିର ଉନ୍ନତି ସାଧନ ଅବଶ୍ୟ କର୍ତ୍ତବ୍ୟ । ବୃହତ୍ ଦେବତାର ପୂଜାରେ କ୍ଷୁଦ୍ର ବଳିର ସାର୍ଥକତା ଅଛି । ଆଜି କାହିଁକି କାଳିଦାସ, ଭବଭୂତି, ସେକ୍ସପିୟର, ଜଗନ୍ନାଥ ଦାସ, ଅଭିମନ୍ୟୁ କିମ୍ବା ପୃଥିବୀର ବହୁ ମୃତ ଜୀବିତ କବି, ଲେଖକ, ଭାବୁକଙ୍କ ନାମ ଅମ୍ଭମାନଙ୍କ ସମ୍ମୁଖରେ ପ୍ରିୟତମ ହୋଇ ଉଠିଛି । ତାହାର କାରଣ ସେମାନେ ମାନବ-ଚିତ୍ତରେ ଏହି ବୃହତ୍ତର ବୋଧଟି ଜାଗ୍ରତ କରି ପାରିଅଛନ୍ତି । ଯେଉଁ କର୍ମ, ଯେଉଁ ଚିନ୍ତା ମନୁଷ୍ୟ ମନରେ, ପ୍ରାଣରେ ଏହି ବୃହତ୍ତର ବୋଧ, ବା ସାମାଜିକତା ସୃଷ୍ଟି କରିପାରି ଅଛି, ତାହା ସର୍ବଦା ଗ୍ରହଣୀୟ, ପୂଜ୍ୟ ଓ କାମ୍ୟ ହୋଇ ପାରିଅଛି । ମନସ୍ୱୀ ଶଙ୍କର ଜଣେ ପ୍ରତାପଶାଳୀ ସମ୍ରାଟ୍ ନ ଥିଲେ । ପ୍ରବଳ ପ୍ରତାପୀ ପ୍ରତାପରୁଦ୍ରଙ୍କ ରାଜତ୍ୱରେ ଜଗନ୍ନାଥ ଦାସ ଜଣେ ଦରିଦ୍ର ବ୍ରାହ୍ମଣ

ମାତ୍ର ଥିଲେ । ଆଜ ତାହାଙ୍କ ସେହି ଶ୍ରେଷ୍ଠ ବ୍ରାହ୍ମଣ ସନ୍ତାନଙ୍କ ନାମ ପୃଥିବୀରେ ଏତେ ଶ୍ରଦ୍ଧା ଓ ଭକ୍ତି ସହିତ ଗୃହୀତ ? ଉତ୍କଳରେ ଘରେ ଘରେ ଭାଗବତ ପଢ଼ାଯାଏ ଜଗନ୍ନାଥ ଦାସଙ୍କ ନାମ ପଢ଼େ, ପ୍ରତାପରୁଦ୍ରଙ୍କୁ କେତେ ଜଣ ଜାଣନ୍ତି ?

କିନ୍ତୁ ପୃଥିବୀରେ ବହୁତ ରାଜା, ବାଦଶାହା, ଧନୀ, ମିଲ ମାଲିକ ଜନ୍ମଲାଭକରି ମରିଅଛନ୍ତି । ସେମାନଙ୍କ ନାମ କିଏ ଜାଣେ ? ବୁଦ୍ଧ-ରାଜପୁତ୍ର ଭାବରେ ନୁହନ୍ତି, ସନ୍ନ୍ୟାସୀ ବା ସତ୍ୟ-ସାଧକ ଭାବରେ ବିଶ୍ୱ-ବନ୍ଦନୀୟ । ବହୁତ ରାଜା ମଧ୍ୟ ନିଜର ସୁକର୍ମ ଦ୍ୱାରା ଅମୃତ ଲାଭ କରିଅଛନ୍ତି । ଅଶୋକ, ହର୍ଷବର୍ଦ୍ଧନଙ୍କ ପୁଣ୍ୟ-ସ୍ମୃତିରେ ପ୍ରତ୍ୟେକ ଭାରତୀୟ ଗର୍ବିତ । ମନୁଷ୍ୟତାର ପ୍ରକୃତ ପ୍ରତିପାଦକ ଏହି କର୍ମ । ଏହାହିଁ ପ୍ରକୃତ ଜୀବନପୂଜାର ଶ୍ରେଷ୍ଠ ଅର୍ଘ୍ୟ । ଯେଉଁମାନେ ଭକ୍ତ ବା ଭଗବାନଙ୍କୁ ପ୍ରକୃତ ପୂଜା କରିବାକୁ ଚାହାନ୍ତି, ସେମାନଙ୍କୁ ମୁଁ ମୁକ୍ତକଣ୍ଠରେ କହିବି ଯେ, ଦୁନିଆରେ ଯଦି କିଛି ଶ୍ରେଷ୍ଠ ପ୍ରୀତିଭକ୍ତିପୂର୍ଣ୍ଣ ଅର୍ଘ୍ୟ ଥାଏ, ତାହା ସୁକର୍ମ; ନିରୀହ ଛାଗ-ବଳି ନୁହେଁ । ପଶୁ ବଳି ଅତୀତ ବର୍ବରତା ଯୁଗର ପ୍ରତୀକ ମାତ୍ର । ସୁକର୍ମ-ଅର୍ଘ୍ୟରେ ଭଗବତ୍ ପୂଜାହିଁ ଆମ୍ଭେମାନେ ଗଭୀର ଶ୍ରଦ୍ଧା ସହିତ କରି ପାରିବା । କି ରାଷ୍ଟ୍ର, ସମାଜ, ସଂସ୍କୃତି, ବା ସଭ୍ୟତା ସବୁ କ୍ଷେତ୍ରରେ ମନୁଷ୍ୟକୁ ଯଦି ପ୍ରକୃତ ଜୀବନପୂଜା କରିବାକୁ ହେବ, ତାହାର ମୂଳ ଅର୍ଘ୍ୟ ସୁ ଅନୁଷ୍ଠିତ ସୁକର୍ମ । ଆଧୁନିକ ଯୁଗରେ 'ବେକାର' ବା କର୍ମହୀନର ଦୁଃଖ ଆମ୍ଭମାନଙ୍କ ଦେଶରେ ଶୁଣାଯାଏ । ପାଶ୍ଚାତ୍ୟ ଓ ପ୍ରାଚ୍ୟରେ ଏହି ସମସ୍ୟା ବଡ଼ ପୃଥକ୍ । ଆମ୍ଭମାନଙ୍କ ଦେଶରେ ବେକାର ସମସ୍ୟାର ମୂଳ କାରଣ କର୍ମ-ଶୂନ୍ୟତା ନୁହେଁ; କର୍ମ-ହୀନତା, ଆମ୍ଭମାନଙ୍କ ଦେଶରେ କର୍ମର ଅଭାବ ନାହିଁ । ଶ୍ରମମର୍ଯ୍ୟାଦା ଜ୍ଞାନ ଆମ୍ଭମାନଙ୍କ ଦେଶରେ ବଡ଼ ଅଦ୍ଭୁତ ଧରଣର । ତେଣୁ ବେକାର । ଶ୍ରମିକଶ୍ରେଣୀଙ୍କ ମଧ୍ୟରେ ବେକାର ବେଶୀ ନାହିଁ । ବରଂ ଗ୍ରାମମାନଙ୍କରେ ଭଲ ଶ୍ରମିକଙ୍କର ଅଭାବ । ଆମ୍ଭମାନଙ୍କର ଆର୍ଥିକ ଅବନତିର କାରଣ ଆଳସ୍ୟ ବା କର୍ମ-ହୀନତା । ଆଳସ୍ୟ ଆମ ନିଜଦ୍ୱାରା ସୃଷ୍ଟି । ଆମ ଦେଶରେ ବହୁତ ଲୋକ ମନେକରନ୍ତି ଯେ, କାମ ନ କରି କେବଳ ବସି ସୁଖରେ ଖାଇବା ସବୁଠାରୁ ବଡ଼ ବିଳାସ । ଏହାଠାରୁ ବଡ଼ ଭୁଲ ଜୀବନରେ କରାଯାଇ ନ ପାରେ । ମଣିଷ ଜୀବନଟା କେବଳ ଖାଇବା, ପିଇବା ପାଇଁ ସୃଷ୍ଟି ହୋଇ ନାହିଁ । ଅନେକ ମଣିଷ ଜୀବନର ଗୁରୁ ଦାୟିତ୍ୱ ଓ ଦୁର୍ଲଭତା ବୁଝି

ନାହାନ୍ତି; ତେଣୁ ଅସୁବିଧା । ପ୍ରତ୍ୟେକ ସ୍ୱ-ଧର୍ମୀ ସ୍ୱଦେଶର ଗୌରବ । ସେମାନେ ଜାତୀୟ ସମ୍ପଦ ଅଭିବୃଦ୍ଧି କରନ୍ତି । ସେମାନଙ୍କ କ୍ଷମତାନୁଯାୟୀ ମାନସିକ କିମ୍ବା ଅର୍ଥିକ ଜଗତରେ କାର୍ଯ୍ୟ କର । ଯେଉଁମାନେ ସମାଜର ଆର୍ଥିକ ଉନ୍ନତି କରିବାକୁ ଚାହାନ୍ତି, ସେମାନଙ୍କର ପ୍ରଥମ ଦାୟିତ୍ୱ ହେଉଛି ସମାଜରେ ଏହି ଶ୍ରମର ମୂଲ୍ୟ, ସମ୍ମାନ ମୂଲ୍ୟ ଜନ ଲୋକମାନଙ୍କୁ ଦେବା । ଆମ୍ ଦେଶରେ ଆଳସ୍ୟ ଆମ୍ଭମାନଙ୍କର ଏତେ ପ୍ରିୟ ଯେ, ଏବେଣି ଅନେକ ଦିନେ ଉପାସ ରହିବା କିନ୍ତୁ କୌଣସି ଉଚ୍ଚ ବଂଶର ସନ୍ତାନ ଶ୍ରମିକ ବା କୁଲି କାମ କରିବାକୁ ନାରାଜ । ଶିକ୍ଷିତଙ୍କ ମଧ୍ୟରେ ଏହି ରୋଗ ମଧ୍ୟ ପ୍ରସାରିତ ହେଉଅଛି । ଆମ୍ଭେମାନେ ପ୍ରକୃତ ଜୀବନ ପୂଜା ଯେତେବେଳେ ଜାଣିବା, ସେତେବେଳେ ଆମ୍ଭମାନଙ୍କ କର୍ମ ସୁସଂଗତ ହେବ; ଆମ୍ଭମାନଙ୍କ ବଚନ ଓ କର୍ମର ସମନ୍ୱୟ ରହିବ । ଆମ୍ଭମାନଙ୍କ ଦେଶରେ କୌଣସି ସାମାଜିକ ବ୍ୟକ୍ତି ତାହାର ବଚନର ମୂଲ୍ୟ ସହଜରେ ବୁଝେ ନାହିଁ; ତେଣୁ ଆମ ସାଧାରଣ ଜୀବନରେ ନାନା ବିଶୃଙ୍ଖଳ ଅବସ୍ଥା ଘଟେ । ମନୁଷ୍ୟତା ଅତି ସାମାନ୍ୟ ଘଟଣାରେ ପରୀକ୍ଷିତ ହୁଏ । କୌଣସି ବିଶିଷ୍ଟ ଘଟଣାରେ ଅନେକେ ବୀରତ୍ୱ ( Heroism ) ଦେଖାଇ ପାରନ୍ତି; କିନ୍ତୁ ପ୍ରତ୍ୟେକ ଦୈନନ୍ଦିନ ଜୀବନରେ ଯେ ନିୟମିତରୂପେ କାର୍ଯ୍ୟ ସମ୍ପାଦନ କରିପାରେ, ନିଜର ପଣ ରଖିପାରେ, ନିଜର କାର୍ଯ୍ୟ ନିର୍ଘଣ୍ଟ ଅନୁସାରେ କର୍ତ୍ତବ୍ୟ ସାଧନ କରିପାରେ, ସେହି ହିଁ ପ୍ରକୃତରେ ଜୀବନପୂଜା ଜାଣେ ବୋଲି କହିବାକୁ ହେବ । ଜୀବନ ପୂଜାର ସାର୍ଥକତା ଦିନକର ଜୀବନରୁ ଜଣାଯିବ ନାହିଁ; ବରଂ ଦୀର୍ଘ ଜୀବନର ପ୍ରତି ଘଟଣା ଦ୍ୱାରା ବିଚାର କରାଯିବ । ଏଥିପାଇଁ ସାମାଜିକ ମାନବ ସାବଧାନ ହେବା ବାଞ୍ଛନୀୟ ।

ସ୍ୱଦେଶକୁ ମଧ୍ୟ କର୍ମ-କ୍ଷେତ୍ରରୁ ବାଦ ଦେଇ ହେବ ନାହିଁ । ବିଶ୍ୱ ବୃହତ୍, କ୍ଷୁଦ୍ରକୁ ନେଇ ବୃହତ୍ । ବିଶ୍ୱକଲ୍ୟାଣ ଲକ୍ଷ୍ୟ ହେଲେ ମଧ୍ୟ ସ୍ୱଦେଶ-କଲ୍ୟାଣ ବିଶ୍ୱ-କଲ୍ୟାଣର ଅନ୍ତରାୟ ନୁହେଁ; ପରିପୂରକ ।

ଆମ୍ଭମାନଙ୍କର ଜନ୍ମଭୂମି ପ୍ରତି ସାମାଜିକ ନାଗରିକ ଭାବରେ ଅବଶ୍ୟ ଏକ କର୍ତ୍ତବ୍ୟ ଅଛି । କିନ୍ତୁ ଇଉରୋପରେ ଜାତୀୟତାର ପରିଣତି ଯାହା, ତାହା ମୋ ବିଚାରରେ ମାରାତ୍ମକ । ଆଜି ଅନ୍ଧ ଜାତିପୂଜା ଓ ବିଜ୍ଞାନର ଅପ୍ରୟୋଗ ଦ୍ୱାରା ବିଶ୍ୱ ବ୍ୟଥିତ ଓ ବିଚଳିତ । ତାହାର କାରଣ ପାଶ୍ଚାତ୍ୟ ଚରମ ବସ୍ତୁ ତାନ୍ତ୍ରିକତାର ଫଳ ଭୋଗ କରୁଅଛି । ଦେବତ୍ୱହୀନ ସଭ୍ୟତାର ପରିଣାମ ଏହିଆ । ଆଧ୍ୟାତ୍ମିକ ସଂସ୍କୃତି ନ ଥିଲେ ମନୁଷ୍ୟର ଦଶା ଏହିପରି

ହୁଏ । ଅନେକେ ଏହି 'ଉନ୍ମାଦ କାଣ୍ଡ ଦେଖି ପ୍ରଶ୍ନ ପଚାରି ପାରନ୍ତି—ବିଶ୍ୱ କେଉଁଆଡ଼େ ? ପୋଲିଶ ଲେଖକ ସିନ୍‌କଇଭିଚ 'କୋଭାଡ଼ିସ୍' (Quovadis) 'କେଉଁଆଡ଼େ ଯାଉଛ' ଉପନ୍ୟାସରେ ଏହି ପ୍ରଶ୍ନ ଉଠାଇ ଥିଲେ । ଯେଉଁବେଳେ ନିରୋଙ୍କ ଅତ୍ୟାଚାରରେ ଦଗ୍ଧ ରୋମ ନଗରୀରେ ଖ୍ରୀଷ୍ଟିୟାନ-ମାନେ ଅତ୍ୟାଚାରିତ, ସେତିକିବେଳେ ଜଣେ ଶ୍ରେଷ୍ଠ ଧର୍ମପ୍ରଚାରକ 'ପଲ୍' ସେହି ନଗରୀ ପରିତ୍ୟାଗ କରି ଯାଉଥିଲେ । ସେତେବେଳେ ତାହାଙ୍କୁ ଦେବବାଣୀ ହେଲା—"କେଉଁଆଡ଼େ ଯାଉଛ ?" ଯେଉଁଠି ଅନ୍ଧାର, ଯେଉଁଠି ଅତ୍ୟାଚାର, ଯେଉଁଠି ଲାଞ୍ଛନା, ସେହିଠାରେ ଧର୍ମ-ସତ୍ୟ ବାଣୀ ପ୍ରଚାର କରିବା ଉଚିତ । ମୃତ୍ୟୁ ଦଣ୍ଡ ଅତି ତୁଚ୍ଛ । ଦୁନିଆରେ କେହି ମରେ ନାହିଁ କିମ୍ବା କରେ ନାହିଁ । ମୁଁ ଆଜି ବିଶ୍ୱର ବିଚଳିତ ଅବସ୍ଥା ଦେଖି ଆଶା ହରାଇ ନାହିଁ । ବିଶ୍ୱ ଲୀଳାରେ ଦ୍ୱନ୍ଦ୍ୱ ସଂଗ୍ରାମ, ସଂଘର୍ଷ, ଦ୍ୱନ୍ଦ୍ୱ ଅବଶ୍ୟମ୍ଭାବୀ । ଏବଂ ଏହାରି ମଧ୍ୟରେହିଁ—ଗୋଳା ବାରୁଦ ଓ ବିଷାକ୍ତ ବାଷ୍ପ ମଧ୍ୟରେହିଁ ମନୁଷ୍ୟକୁ ଯଥାର୍ଥ ଜୀବନ ପୂଜା କରିବାକୁ ପଡ଼ିବ । ଗୀତାର ଉପଦେଶ କୁରୁକ୍ଷେତ୍ର ମଧ୍ୟରେ । ବିଶ୍ୱ କୁରୁକ୍ଷେତ୍ର । କୌରବ-ପାଣ୍ଡବ କିମ୍ବା ରାମ ରାବଣ ଯୁଦ୍ଧ ଥରେ ଶେଷ ହୋଇ ନାହିଁ । ସତ୍ୟ ଓ ଅସତ୍ୟର ଦ୍ୱନ୍ଦ୍ୱ ଚିରକାଳ ଲାଗିଥିଲା, ଲାଗିଅଛି ଓ ଲାଗିଥିବ । କିନ୍ତୁ ମନୁଷ୍ୟ ଭାବରେ ଆମ୍ଭମାନଙ୍କର ମହାଭାରତ ଓ ରାମାୟଣର ଶିକ୍ଷା ଭୁଲି ନ ଯିବା ଉଚିତ ।

ଜାତୀୟତା ଅର୍ଥ ଏହା ନୁହେଁ ଯେ ଅନ୍ୟ ଜାତିକୁ ଘୃଣା କରିବା । ବରଂ ଆତ୍ମଜ୍ଞାନ, ବିଶ୍ୱ-ସମ୍ମାନ-ଜ୍ଞାନ ଦିଏ । ମୋ ଜାତିକୁ ମୁଁ ସମ୍ମାନ ଚକ୍ଷୁରେ ଦେଖିବି ବୋଲି ଅନ୍ୟ ଜାତି ସମସ୍ତଙ୍କୁ ହେୟ ଘୃଣା ଚକ୍ଷୁରେ ନଦେଖିବି, ଏମନ୍ତ ନୁହେଁ । ଅବଶ୍ୟ ଜାତୀୟ ସ୍ୱାର୍ଥର ସଂଘର୍ଷ ଅବଶ୍ୟମ୍ଭାବୀ । କିନ୍ତୁ ସକଳ ସଂଘର୍ଷ ସଂଗ୍ରାମ ମଧ୍ୟରେ ବୃହତ୍ତର ବିଶ୍ୱ-କଲ୍ୟାଣ ଚିନ୍ତା ମନରୁ ପାଶୋରି ଦେବା ଅନୁଚିତ । ସତ୍ୟ, ନ୍ୟାୟର ଜୟ ସବୁଠି ହେବ । ଏହି ସତ୍ୟ; ଅହିଂସା, ନ୍ୟାୟ ଆମ ଜାତୀୟ ଓ ରାଷ୍ଟ୍ରୀୟ ନୀତିନିର୍ଦ୍ଧାରଣର ମୂଳ ଭିତ୍ତି ହେବା ଉଚିତ ।

ରାଷ୍ଟ୍ରନୀତି, ସର୍ବଦା ଦେଶ, କାଳ ଓ ପାତ୍ରକୁ ଦେଖେ । ଯୁଗର ଏକ ଆଦର୍ଶ ଅଛି, ଯୁଗର ଆଦର୍ଶ ବହିର୍ଭୂତରେ କେହି ଚିନ୍ତାଶୀଳ ରାଷ୍ଟ୍ରନୀତିଜ୍ଞ ତାହାର ନୀତି ନିର୍ଦ୍ଧାରଣ କରେ ନାହିଁ । ସମତା ନୁହେଁ—ଲୋକ ମଙ୍ଗଳ ହିଁ ପ୍ରକୃତ ଶାସକର କାମ୍ୟ ବସ୍ତୁ । ସମତା ପ୍ରୟୋଜନ ଲୋକମଙ୍ଗଳ ପାଇଁ । ଲୋକ-ମଙ୍ଗଳ-ହୀନ ସମତାର ଲାଭ କଅଣ ? ବୃଥା ସମତା ପ୍ରତି

ଲଳାୟିତ ହେବାରେ ଜୀବନର ପ୍ରକୃତ ପୂଜା ସାଧିତ ହେବ ନାହିଁ । ତେଣୁ ରାଜନୀତିର ସକଳ ପରିବର୍ତ୍ତନ ବା ବିବର୍ତ୍ତନ ମଧ୍ୟରେ ଶାସକମାନେ ଶାସନ-ନୀତିର ଏହି ମୂଳ ସୂତ୍ର ବୁଝିବା ଦରକାର । ସବୁ ଯୁଗରେ ଏହା ଆଦର୍ଶ ଥିଲା । ପୃଥିବୀର ବହୁବିଧ ରାଷ୍ଟ୍ରନୀତିର ପ୍ରଣାଳୀରେ ଅବଶ୍ୟ ଆଦର୍ଶ ଦିଗରୁ ବହୁ ପାର୍ଥକ୍ୟ ଅଛି । ମାତ୍ର ବାସ୍ତବତାଠାରୁ ସବୁ ପଦ୍ଧତିର ଅବନତି ସମ୍ଭବପର ।

ତେଣୁ ଆଦର୍ଶ କେବଳ ନୁହେଁ, ବାସ୍ତବରେ ପ୍ରୟୋଗ ବିଗୃର୍ଯ୍ୟ । ଏତିକି ମନୁଷ୍ୟର ମନେ ରଖିବା ଉଚିତ ଯେ ରାଜନୀତିରେ କିଛି ଚିରଦିନ ସର୍ବକାଳେ ସ୍ଥାୟୀ ନୁହେଁ । ଏହା ଜୀବନର ଅତି ଚଞ୍ଚଳ ସ୍ୱଭାବ ସହିତ ସଂପୃକ୍ତ । ତେଣୁ ରାଜନୀତିର ପରିବର୍ତ୍ତନ ପରିବର୍ଦ୍ଧନରେ ବିଶେଷ ବିଚଳିତ ହେବା ଅନୁଚିତ । କିନ୍ତୁ ସନାତନ ସତ୍ୟର ପୂଜା କରିବା, ଯାହାର ପରିଚୟ ବିଶ୍ୱରେ କେବେ ସମ୍ଭବପର ନୁହେଁ । ଆହୁରି ମଧ୍ୟ ମନେ ରଖିବାକୁ ହେବ ଯେ, ସକଳ ରାଜନୀତିକ ସଂଗ୍ରାମ ଓ ଅର୍ଥନୀତିକ ସଂଘର୍ଷ ମଧ୍ୟରେ ଆମ୍ଭମାନଙ୍କର ଜୀବନ ସହିତ ଗଭୀର ଭାବରେ ସଂପୃକ୍ତ ସଂସ୍କୃତି-ଧ୍ୱଜାକୁ ମୁକ୍ତାକାଶରେ (Banner of Culture) ଊର୍ଦ୍ଧ୍ୱରେ ଉଡ଼ାଇ ରଖିବାକୁ ହେବ । ଚୀନ ଆମର ଏ ବିଷୟରେ ବଡ଼ ଆଦର୍ଶ । ଚୀନର ଗୋଳାବାରୁଦ, ଯୁଦ୍ଧ ମଧ୍ୟରେ ଶିକ୍ଷା-ନିକେତନ ବିଶ୍ୱ-ଭାରତୀ ଗୁଡ଼ିକ ସୁପରିଚାଳିତ ହୋଇଥିଲା । ସେହିପରି ଦେଶର କଳା, ସାହିତ୍ୟର ଗତି-ସ୍ରୋତକୁ ବନ୍ଧନ-ହୀନ କରି ରଖିବାକୁ ହେବ । କାରଣ ପ୍ରକୃତ ସଂସ୍କୃତି ସତ୍ୟ ସହିତ ସଂପୃକ୍ତ ଏବ ଏହା ଏକ ଯୁଗରେ ଆବଦ୍ଧ ନୁହେଁ । ଏହା ବିଶ୍ୱ-ମାନବ ଜୀବନର ଏକ ଯୁଗହୀନ କର୍ମ । ତେଣୁ ଜୀବନ ପୂଜାରେ ଏହାର ପ୍ରକୃତ ସ୍ଥାନ ଓ ସମ୍ମାନ ସାମାଜିକ ମାନବ ବୁଝିବା ଉଚିତ ।

ଜୀବନପୂଜାରେ ମନୁଷ୍ୟର ଆନନ୍ଦ ବୋଧ ଆହୁରି ବଢ଼ିଯିବ, ଯେତେବେଳେ ମନୁଷ୍ୟ ଜୀବନରେ ସୌନ୍ଦର୍ଯ୍ୟର ପ୍ରକୃତ ସ୍ଥାନ ଅନୁଭବ କରିବ । ଜନାକୀର୍ଣ୍ଣ ସହରର ରାଜମାର୍ଗ ପାର୍ଶ୍ୱସ୍ଥିତ ଏକ ସିତଲ ପ୍ରାସାଦର ଗବାକ୍ଷରେ ଦେଖା ଯାଉଥିବା ନୀଳାକାଶର କ୍ଷୁଦ୍ର ଅଂଶ କି ଚିତ୍ତାକର୍ଷକ । ଏହା ପ୍ରାଣକୁ କି ଗଭୀର ଭାବରେ ପ୍ରଭାବିତ କରେ । ଆମ ଚାରିଆଡ଼େ ପରମ ପ୍ରକୃତି ଏକ ଅସୀମ ସୌନ୍ଦର୍ଯ୍ୟ-ରାଜ୍ୟ ବିସ୍ତାର କରି ବସିଅଛି । ହୁଏ ତ ଆମର ସେହି ଆଡେ ଦୃଷ୍ଟି ନାହିଁ । ତେଣୁ ଜୀବନପୂଜା ସାର୍ଥକ ହୁଏ ନାହିଁ । ଖରସ୍ରୁଆର ନାନା ସୌନ୍ଦର୍ଯ୍ୟସୃଷ୍ଟି ମଧ୍ୟରେ ରାଜ୍ୟପ୍ରଦର୍ଶୀ ପାହାଡରେ

ନୀଳାଭଶୋଭା, 'ଘଙ୍ଗାପାହାଡ଼,' 'କୁଳଚକ୍ରବଣ, ନଦୀ, ପାହାଡ଼ର ଅପରୂପ ଶୋଭାସମ୍ପଦ ଭୁଲ ହେବ ନାହିଁ । ଜୀବନର ଯେଉଁ କ୍ଷଣିକ ଆନନ୍ଦ ମନୁଷ୍ୟ ପାଏ, ପୁଣି ପ୍ରେମଜନ୍ତୁକ ଜନ୍ମ ଉଲ ଅନେକ ସମୟରେ ତାହାଁରୁ ସେ ଗଭୀର ଆନନ୍ଦ ଓ ଆଶା ପାଏ । ସାମାନ୍ୟ ନୀଳାକାଶ, ଶାଗୁଆ ବଣ, ଜଳ, ପବନ, ଓ ପକ୍ଷୀ ମନୁଷ୍ୟ ଚିତ୍ତକୁ ଗଭୀର ଭାବରେ ଅଭିଭୂତ କରେ । ଏହି ବିଶ୍ବ-ସୌନ୍ଦର୍ଯ୍ୟର ପୁଣି ପ୍ରକାଶ ହୋଇଛି ମାନବର କଳା ସାହିତ୍ୟରେ । କେବଳ ପ୍ରକୃତି ନୁହେଁ ଜୀବନର ବି ଯଥେଷ୍ଟ ସୌନ୍ଦର୍ଯ୍ୟ ସତ୍ତ୍ବ ବିରାଜିତ । ଯେତେବେଳେ ଚିତ୍ରକର ତୁଳି ଧରି ଚିତ୍ର ଆଙ୍କେ କମ୍ବା କବି ଆତ୍ମ ସତ୍ତ୍ବ ଭୁଲି ବିଭୋର ହୋଇ ଗୀତ ଗାଏ କମ୍ବା ଶିଳ୍ପୀ ସୁନ୍ଦର ମୂର୍ତ୍ତି ଗଠନ କରେ ସମସ୍ତ କଳାକାର ଗଭୀର ଭାବରେ ଏକ ସୌନ୍ଦର୍ଯ୍ୟ ଆନନ୍ଦ ସତ୍ତ୍ବ ପ୍ରାଣେ ପ୍ରାଣେ ଅନୁଭବ କରନ୍ତି । ସେହି ସୌନ୍ଦର୍ଯ୍ୟଅନୁଭୂତିର ମଧୁର ଝଙ୍କାର ସେମାନେ କଳା-ଗ୍ରାହକ କମ୍ବା ଗ୍ରାହକଙ୍କ ପ୍ରାଣରେ ଜାଗ୍ରତ କରନ୍ତି ବୋଲି ସେମାନେ ଚିତ୍ତହାରୀ ଗ୍ରାହକଙ୍କ ପ୍ରାଣସିଂହାସନରେ ସମ୍ରାଟ ଆସନରେ ବସନ୍ତି । ଯଦି ପୃଥିବୀରେ କେହି ଅଦୃଶ୍ୟ ଭାବରେ ମାନବ ଅନ୍ତରକୁ ବେଶୀ ପ୍ରଭାବିତ ବା ଶାସନ କରୁଥାଏ, ତେବେ ସେମାନେ କବି, ଲେଖକ ଓ ଭାବୁକ ।

ସେ ଯାହା ହେଉ ଜୀବନର ନାନା କର୍ମ ମଧ୍ୟରେ ସୌନ୍ଦର୍ଯ୍ୟ ପ୍ରକାଶ କରିବା ଓ ସୌନ୍ଦର୍ଯ୍ୟ ବୋଧ କରିବା ମନୁଷ୍ୟ ସଂସ୍କୃତିର ଏକ ଶ୍ରେଷ୍ଠ ଆଦର୍ଶ । କଳା ଏହି ଆଦର୍ଶରେ କନ୍ଦ୍ରୀଭୂତ । ପ୍ରାଚୀନ କାଳରେ ଘରେ କାଠ ଭାଙ୍ଗିବା, ଲୁଗା ବୁଣିବା, ଫୁଲ ଗୁନ୍ଥିବାଠାରୁ ଚିତ୍ର ପକାଇବା ଯାଏ ସର୍ବତ୍ର ଏହି ସୌନ୍ଦର୍ଯ୍ୟର ପ୍ରକାଶ ସାଧାରଣ ଜୀବନରେ ସମ୍ଭବପର ହୋଇ ପାରୁଥିଲା । ବର୍ତ୍ତମାନ ସେ ଆଦର୍ଶ ମଧ୍ୟ ଭାଙ୍ଗି ନାହିଁ । ଦୈନନ୍ଦିନ ସକଳ କର୍ମ ମଧ୍ୟରେ ଏହି ସୌନ୍ଦର୍ଯ୍ୟ ପ୍ରକାଶ । ଜୀବନକୁ ମଧୁର, ସୁନ୍ଦର ଓ ଉନ୍ନତ କରିପାରେ । ସୌନ୍ଦର୍ଯ୍ୟ ଓ ସଂଯମ ପରସ୍ପର ସଂପୃକ୍ତ । ପୂର୍ବେ ମନ୍ଦିର ଆମ ଜୀବନପୂଜାର କେନ୍ଦ୍ର ଥିଲା । ମନ୍ଦିରକୁ କେନ୍ଦ୍ର କରି ଆମ ଦେଶର ଆଧ୍ୟାତ୍ମିକ ସଂସ୍କୃତି ଗଢ଼ି ଉଠିଥିଲା । ବର୍ତ୍ତମାନ ମନ୍ଦିର ଜୀବନରେ ଟିକିଏ ପଛେଇ ଯାଉଛି । କିନ୍ତୁ ତାହା ଅଦ୍ଭୁତ ସଂସ୍କୃତସ୍ଥାନ ନ ହେଲେ ରକ୍ଷା । କୌଣସି ଶିକ୍ଷିତ ନାଗରିକ ଏହିସବୁ ଗୁଣ ପାଶୋରି ଦେବା ଅନୁଚିତ । ସଂସ୍କୃତି ଆମର ଧର୍ମ, ନୀତି ଓ କଳାପ୍ରୀତିକୁ ଆଶ୍ରା କରି ।

କିନ୍ତୁ ସକଳ ପୂଜାର ମୂଳରେ ସୁକର୍ମ ପ୍ରୀତି । ଜୀବନର ସ୍ବରୂପ କଅଣ ? ମୁଁ ଜୀବନର ଆନନ୍ଦ ଦର୍ଶନରେ ବିଶ୍ବାସ କରେ । ମୁଁ ଆନନ୍ଦରୁ

ଜାତ, ଆନନ୍ଦରେ ସ୍ଥିତି ଓ ମୋର ପରିଣତି ଚିର ଆନନ୍ଦ । ନିରାନନ୍ଦ ଭ୍ରମ ବା ଅବିଦ୍ୟାରୁ, କେହି ଦୁଃଖରେ ବିଚଳିତ ହେଲେ ବୋଲି ଭାବିବା ଉଚିତ ନୁହେଁ ଯେ, ଜୀବନରେ ଅଖଣ୍ଡ ଆନନ୍ଦ ଉପଲବ୍ଧି ଅସମ୍ଭବ । ମୁଁ ସ୍ୱୀକାର କରୁଛି ଯେ, ଜୀବନ ଏକ ସରଳ ବାଟ ନୁହେଁ । ନାନା ବାଧା ବିଘ୍ନ, ଦୁଃଖ ଯନ୍ତ୍ରଣା ଜୀବନ ଯାତ୍ରା ପଥରେ ଅଛି । ଏହାକୁ ଏଡ଼ାଇ ଜୀବନ ଯାତ୍ରୀ ଯିବ ନା ଏହି ବିପଦ ମଧ୍ୟରେ ବାଷ୍ପାକୁଳ ନୟନରେ ରହି ରହି ହାହାକାର କରିବ ? ବୀରତ୍ୱ କେଉଁଠି ? ବ୍ୟକ୍ତିଗତ ଜୀବନ ଭଳି ଜାତୀୟ ବା ରାଷ୍ଟ୍ରୀୟ ଜୀବନରେ ମଧ୍ୟ ବହୁ ଦୁର୍ଘଟଣା ସମ୍ଭବପର । ମନୁଷ୍ୟସମାଜ ନାନା ଜଟିଳତା ମଧ୍ୟରେ ଜଗତରେ ଅଗ୍ରସର ହେଉଅଛି । କିନ୍ତୁ ଏହି ସମସ୍ତ ସମସ୍ୟା ମଧ୍ୟରେ ଭାବିବା ଉଚିତ ଯେ, ଜୀବନ ଯାତ୍ରାର ସାର୍ଥକତା କେଉଁଠି ? ଦୁଃଖ, ଯନ୍ତ୍ରଣା, ବାଧାବିଘ୍ନକୁ ପଦରେ ଦଳି ବୀର ହେବାରେ ନା ଦୁଃଖ ଯନ୍ତ୍ରଣା, ବାଧାବିଘ୍ନର ଭଉଁରୀ ମଧ୍ୟରେ ଜଳମଗ୍ନ ହେବାରେ ? ବିଶ୍ୱରେ ବହୁ ନରନାରୀ ବୃଥା ଭ୍ରମରେ ଅଛି । ଅଗଣିତ ଆର୍ତ୍ତକଣ୍ଠର ଅର୍ଥହୀନ କରୁଣ କାତର କ୍ରନ୍ଦନରେ ବିଶ୍ୱ ମୁଖରିତ; କିନ୍ତୁ ମୁଁ ସମସ୍ତ ଦୁଃଖଯନ୍ତ୍ରଣା, ବାଧା-ବିଘ୍ନର ପଙ୍କ ମଧ୍ୟରେ ଏକ ଅବିଚଳିତ, କଠିନ ପ୍ରସ୍ତର ଖଣ୍ଡ ପାଇଅଛି—ତାହା ଆନନ୍ଦ ! ଯେ ଜୀବନର ପ୍ରକୃତ ପୂଜାରୀ ହେବ, ସେ ନିଶ୍ଚୟ ଆନନ୍ଦର ଅଧିକାରୀ ହେବ । ଜଣେ ଯଦି ଆନନ୍ଦ ପାଇ ପାରେ, ଅନ୍ୟ ଜଣେ ନ ପାଇବ କାହିଁକି ? ଅବଶ୍ୟ ଟିକିଏ ଚେଷ୍ଟା ସଂଯମ ଓ ସାଧନା ଦରକାର । ସେହି କୌଶଳର ସୂତ୍ର ଆଦୌ ପୂଜାରୀର ବୁଝିବା ଲୋଡ଼ା; ନୋହିଲେ ଆନନ୍ଦ କାହୁଁ ମିଳିବ ?

ସଂଘର୍ଷ, ସଂଗ୍ରାମ, ବିଦ୍ରୋହ, ବିପଦ ତ ଆସିବ; କିନ୍ତୁ ଆମ୍ଭେମାନେ ବୃଥା ଶୋଚନାରେ ବ୍ୟସ୍ତ ହେଉଁ । ମୃତ୍ୟୁ, ବ୍ୟାଧି, ବାର୍ଦ୍ଧକ୍ୟରେ ଅକାରଣରେ ବିଚଳିତ ହେଉଁ । କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ଟିକିଏ ବିଚାର କରି ଦେଖନ୍ତୁ ତ ବ୍ୟସ୍ତ ବା ଦୁଃଖର କାରଣ ସେଠାରେ କେଉଁଠି ଅଛି ? ଭୂତ ଗଠିତ ଅଙ୍ଗ କ୍ଷୟର ଅଧୀନ । ବିଶ୍ୱ କିନ୍ତୁ ପୂର୍ଣ୍ଣଭାବରେ ଅକ୍ଷୟ । ଜାଗତିକ ବିପଦରେ ଉପାୟ ନିର୍ଦ୍ଧାରଣ କରି କର୍ମ କରିବା ସିନା ମନୁଷ୍ୟୋଚିତ; କାନ୍ଦିବା ବା ବ୍ୟସ୍ତ ହେବା ନିରର୍ଥକ । ଏହିପରି ବିଚାର ପ୍ରୟୋଗ କରି ଦେଖିଲେ ଜଣା-ଯିବ ଯେ, ଜୀବନପୂଜାର ପ୍ରକୃତ ପ୍ରାଣ—ଆନନ୍ଦ ।

ବିଶ୍ୱର ଲୀଳା ବୁଝିବା ଉଚିତ । ଆଲୋକ ଅନ୍ଧାର ଜଗତର ଚିର ବନ୍ଧୁ । ତେବେ ଅନ୍ଧାର ପାଇଁ ନୁହେଁ ଆଲୁଅ ପାଇଁ ସଂଗ୍ରାମରେ ମନୁଷ୍ୟତା

ଓ ବୀରତ୍ୱ ପ୍ରତିପାଦିତ ହୁଏ। ବିଶ୍ୱବାସୀ ନିଜ ଦୁର୍ଲ୍ଲଭ ମନୁଷ୍ୟ ଜୀବନର ଏହି ପ୍ରକୃତ ସ୍ୱରୂପ ଓ ମୂଲ୍ୟ ବୁଝି ସ୍ୱଗୁଣ, ସ୍ୱଧର୍ମ-ପୁଷ୍ପ ଯୋଗେ ଜୀବନ-ପୂଜାରେ ବ୍ରତୀ ହୁଅନ୍ତୁ ଏବଂ ସତ୍ୟଦେବତାର ପ୍ରକୃତ ଆରାଧନା ଦ୍ୱାରା ଆନନ୍ଦଲାଭ କରନ୍ତୁ, ଏହାହିଁ ମୋର ସବୁଠାରୁ ଶ୍ରେଷ୍ଠ ଶୁଭ କାମନା ଏବଂ ବିଶ୍ୱରେ ଏହି ପ୍ରକାର ଯଥାର୍ଥ ବାଣୀ ପ୍ରଚାରରେ ମୋର ଆନନ୍ଦ। ମନୁଷ୍ୟ ଜାତିର ପ୍ରତ୍ୟେକ ଜଣ ମଣିଷ ଜୀବନର ଗୂଢ଼ ତାତ୍ପର୍ଯ୍ୟ ବୁଝିଲେହିଁ ହେଲା। ଏହାହିଁ ପ୍ରକୃତରେ ଆମ୍ଭମାନଙ୍କର ଶିକ୍ଷା ଓ ସଂସ୍କୃତିର ଯଥାର୍ଥ ପରିମାପକ ସିନା !

---

# ଦର୍ଶନ ଓ ଜୀବନ

ମଣିଷ ଦେଖିପାରେ। ଅନ୍ୟମାନେ ବି ଦେଖି ପାରନ୍ତି। କିନ୍ତୁ ଏହି ଦେଖିବାରେ ଦେଖିବା ଅଛି। ରାଜଗଡ଼କୁ ଆଗନ୍ତୁକ ଆସିଲେ କିଏ ମଠର ଦେଖନ୍ତି, କିଏ ଟୋପି, କୋଟ ଦେଖନ୍ତି, କିଏ ଆଗନ୍ତୁକଙ୍କ ଖାଇବା, ପିଇବା ଦେଖନ୍ତି। ତାହାକୁ ବା କେହି ଦେଖନ୍ତି ନାହିଁ। ଏହି ଦେଖିବାରେ ତେଣୁ ଫରକ ଥାଏ। କିଏ କେଉଁ ଦଗରୁ ଦେଖନ୍ତି। ମୁଁ ବି ଦେଖିବାକୁ ଜଗତକୁ ଆସିଛି। ମୁଁ ପ୍ରତ୍ୟହ ଦେଖୁଛି। କେବଳ ଏହି ଫାଇଲ, ଅର୍ଦ୍ଧର, ମଠର, ଶିକାର, ବଣ; ଜଙ୍ଗଲ ନୁହେଁ, ମୁଁ ଏହା ତଳକୁ ଯାଏ। ମୁଁ ଚାରିଆଡ଼ୁ ଦେଖେ। ଏପାଖ—ସେପାଖରୁ ଦେଖେ। ତଳୁ, ଉପରକୁ ଦେଖେ, ଉପରୁ ତଳକୁ ଦେଖେ। ଅନ୍ୟମାନେ ବି ଦେଖୁଥିବେ। କିନ୍ତୁ ଏହି ଦେଖିବାରେ ବେଳେ ବେଳେ ମଣିଷର ଗୋଟିଏ ଭୁଲ ହୋଇ ଥାଏ। କିଏ କାହାକୁ କେଉଁ ଆଖିରେ ଦେଖନ୍ତି ! କିନ୍ତୁ ମୁଁ ମୋର ଦୀର୍ଘ ଭ୍ରମଣ ଅନୁଭୂତିର କଥା କହେ। ମୁଁ ତ ବହୁତ ସ୍ଥାନ, ବହୁତ ଜାଗାର ଲୋକ ଦେଖିଛି। ବହୁତ ପ୍ରଶ୍ନ ମୁଁ ଶୁଣିଛି। ଯେଉଁ ସ୍ଥାନକୁ ମୁଁ ଯାଉଛି ଶିକ୍ଷିତ ଲୋକେ ଗୋଟିଏ କଥା ଅବସର ବେଳେ ଆଲୋଚନା କରିବା ଦେଖୁଛି। ସେମାନଙ୍କ ପ୍ରାଣରେ ଗୋଟିଏ ପ୍ରଶ୍ନ ଜାଗିଛି। ସେ ପ୍ରଶ୍ନଟା କଅଣ ? ପ୍ରଶ୍ନଟା ଏହି ଦୁନିଆକୁ ଦେଖା-ଦେଖିର ପ୍ରଶ୍ନ। ଦୁନିଆକୁ ମଣିଷ କିପରି ଦେଖିଛି ? ଦୁନିଆକୁ ଯେ ଗଢ଼ିଛି, ସେ ଦେଖିବାକୁ କିପରି କି, କଳା ନା ଗୋରା ? ମଣିଷ ମଲା ପରେ ତା ରୂପ ଦେଖିବାକୁ କିପରି କି ? କିଏ ବସି ଜଣକୁ ଦରିଦ୍ର ଆଉ ଜଣକୁ ବଡ଼ଲୋକ କରିଦେଲା ? ସେ ମୋଟା ନା ପତଳା ?

ଏମିତି ନାନା ପ୍ରଶ୍ନ । ଏହି ପ୍ରଶ୍ନର ଉତ୍ତର ମଧ୍ୟ ମଣିଷ ନାନା ସମୟରେ ନାନାଭାବରେ 'ତା' ଦେଖା ଭଙ୍ଗୀ ଅନୁଯାୟୀ ଦେଇଛି । କେହି ଆପେ ଆପେ ଭାବି ଉତ୍ତର ଦେଇଛି, କେହି ବହି ପଢ଼ି ଅନ୍ୟଙ୍କ ମତ ଦ୍ୱାରା ପ୍ରଭାବିତ ହୋଇ, ଅନ୍ୟର ମତକୁ ନିଜର ମତ ବୋଲି ଗ୍ରହଣ କରି ନେଇ ଦୁନିଆକୁ ଦେଖି ଉତ୍ତର ଦେଇଛି । ଯେଉଁମାନେ ବହି ପଢ଼ି ମତ ଗଠନ କରନ୍ତି, ସେମାନେ ଜାଣିବା ଦରକାର, ଯେ ବହି ଲେଖିଛନ୍ତି, ସେ ମଣିଷ । ସେ ଆମରି ଭଳି ଏ ମାଟିରେ ଥିଲେ, ଏବଂ ଏହି ପାରିପାର୍ଶ୍ୱିକ ଅବସ୍ଥାକୁ ଅନାଇ, ବସ୍ତୁର ଚିନ୍ତା କରିଥିଲେ, ବାଟ ବତାଇ ଥିଲେ । ଏହି ଦେଖା-ଦେଖି ଭାବରୁ ବା ଚିନ୍ତାରୁ ଦର୍ଶନ ଶବ୍ଦର ଉତ୍ପତ୍ତି ।

ଦେଖିବା ବା ଦର୍ଶନ ଜୀବନର ମୂଳ ଭିତ୍ତି, ଏହା ଜୀବନର ଗମ୍ଭୀର ଅନୁଭୂତି । ଦର୍ଶନ-ଶୂନ୍ୟ ଜୀବନ ସନ୍ଧ୍ୟାବେଳର କକ୍ଷଚ୍ୟୁତ ତାରା ଭଳି କେଉଁ ଅତଳ ଗହ୍ୱରରେ ପଡ଼ି ବୁଡ଼ିବ । ପଶ୍ଚିମ ମହାଦେଶରେ ସଂସ୍କୃତି ଓ ସଭ୍ୟତାର ମୂଳଦୁଆ ଏକ ଅର୍ଥନୀତିକ ବ୍ୟବସାୟାତ୍ମକ ନୀତି ଉପରେ ପ୍ରତିଷ୍ଠିତ । ସ୍ୱାର୍ଥ ସେମାନଙ୍କ ସାମାଜିକ ନୀତିର ପ୍ରଧାନ ସୂତ୍ର; ତେଣୁ କଳହ, ଯୁଦ୍ଧ । ଆଧ୍ୟାତ୍ମିକହୀନ ସଂସ୍କୃତିକୁ ଆମ୍ଭେମାନେ ପ୍ରାଚୀନକାଳରେ ଅସୁର ସଭ୍ୟତା ବୋଲି ଆଖ୍ୟା ଦେଇଥିଲୁଁ । ଅସୁର ସଭ୍ୟତାରେ ଭୌତିକ ଉନ୍ନତି ବିଶେଷ ହୋଇଥିଲା । ତଥାପି ଅସୁରମାନେ ଶାନ୍ତିରେ କାଳ ଯାପନ କରି ପାରୁ ନ ଥିଲେ । କାରଣ ଶାନ୍ତି, ଆନନ୍ଦ କେବଳ ଭାତ, ଲୁଗା କମ୍ବା ବନ୍ଧୁକ, କଳକବ୍ଜାରେ ନାହିଁ । ଇଂରେଜ ତ ଏତେ ଧନୀ, ତେବେ ଯୁଦ୍ଧ କାହିଁକି ? କୁକୁର ଭଳି ଖଣ୍ଡେ ଭଙ୍ଗା ମାଂସହୀନ ହାଡ଼ ଲାଗି ସେମାନେ ଏତେ କାମୁଡ଼ା କାମୁଡ଼ି କାହିଁକି ଲାଗିଛନ୍ତି ? ତେଣୁ ଇଉରୋପୀୟ ସଭ୍ୟତା ଆଜି ପ୍ରଳୟପଥର ଅଗ୍ରଗାମୀ । ମୁଁ ଏଥିରେ ବ୍ୟସ୍ତ କମ୍ବା ବିସ୍ମିତ ନୁହେଁ । ଏଥିରୁ କେହି ଭାବିବେ ନାହିଁ ଯେ ମୁଁ ବିଶ୍ୱ-ବହିର୍ଭୂତ ବ୍ୟକ୍ତି, ତାହା ନୁହେଁ । ଇଉରୋପରେ ତ ପତନ-ଲୀଳା ଲାଗିଛି । ସ୍ପେନ, ରୋମ ସାମ୍ରାଜ୍ୟ ଆଜି ନାହିଁ । ଫ୍ରାନ୍ସ ସାମ୍ରାଜ୍ୟର ଅଧଃପତନ ଇତିହାସ ଘର ପଢ଼ି ସାରିଲେଣି । ତାହାର କାରଣ କ'ଣ ? ଏହିଠାରେ ଆପଣମାନେ ହିନ୍ଦୁ ଦର୍ଶନର କର୍ମ୍ମ-ନିୟମକୁ ଆସିବାକୁ ବାଧ୍ୟ । ହିନ୍ଦୁ ଦର୍ଶନ କର୍ମ୍ମ-ନିୟମ ଉପରେ ଖୁବ୍ ଆସ୍ଥା ପ୍ରଦର୍ଶନ କରେ । ସ୍ୱକୃତ କର୍ମରୁ ଯେପରି ବ୍ୟକ୍ତି ଖସି ପାଇ ନ ପାରେ, ସେହିପରି ଜାତି ବା ଦେଶ ମଧ୍ୟ ଖସି ପାଇ ନ ପାରେ । ଆମ୍ଭେମାନେ ବିଶ୍ୱ ଇତିହାସର ଏହି ପରମାର୍ଥ

ଘଟନାବଳୀ ଦେଖି ଦର୍ଶନ-ସୂତ୍ର ବାହାର କରିବା ଉଚିତ । ମୁଁ ପୃଥିବୀର ସୃଷ୍ଟି କିମ୍ବା ଦ୍ୱନ୍ଦ୍ୱରେ ବିଚଳିତ ନୁହେଁ । ମୁଁ ଜାଣେ ପୃଥିବୀର ଆଲୋକ-ଅନ୍ଧାର, ହିଂସା-ଅହିଂସା, ନ୍ୟାୟ-ଅନ୍ୟାୟ ଚିର ବିଧିଭାବରେ ଜଡ଼ିତ । ଏହି ଦୁଇ ପରସ୍ପର ବିରୋଧୀ ଶକ୍ତିକୁ ନେଇ ସୃଷ୍ଟି । କିନ୍ତୁ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କର ବୁଝିବା ଉଚିତ ଯେ ଅମର ସାହାଯ୍ୟ ସତ୍ୟ ପ୍ରତି, ଯାହାର ପରାଜୟ ପୃଥିବୀରେ ଅସମ୍ଭବ । ଯାହା ପରାଜୟ ଭଳି ଜଣାପଡୁଛି, ତାହା ହୁଏତ ପ୍ରକୃତ ଜୟ ହୋଇପାରେ । ଏହାର ଉଦାହରଣ ଆଉ ଅଗରେ ମହାଭାରତ, ରାମାୟଣରେ ଥୁଆ ହୋଇଛି । ଶ୍ରୀରାମ, ରାବଣ ଦ୍ୱାରା କପଟ ନିର୍ଯାତିତ ହୋଇଥିଲେ, ସୀତା ବନ୍ଦିନୀ ହେଲେ । ପୁଣି, ମହାଭାରତରେ ଦ୍ରୌପଦୀଙ୍କୁ ପଣକରି ପଞ୍ଚ ପାଣ୍ଡବ ପଶା ଖେଳିଲେ, ଜତୁଗୃହ ଦାହ ହେଲା, ଅଭିମନ୍ୟୁ ବ୍ୟୂହରେ ମଲା, କିନ୍ତୁ ଶେଷରେ "ଫଳ କଅଣ ହେଲା ? ରାମାୟଣ କିମ୍ବା ମହାଭାରତର ଆଧ୍ୟାତ୍ମିକ ଅର୍ଥ ଗୂଢ଼ ଦିଆଯାଇ । ଆଧ୍ୟାତ୍ମିକ ରାମାୟଣ ବୋଲି ତ ସ୍ୱତନ୍ତ୍ର ବହି ଆମ ସାହିତ୍ୟରେ ଅଛି । ଗୀତାର ଆଧ୍ୟାତ୍ମିକ ଅର୍ଥ ଯେନ ବହି ଆମ ସାହିତ୍ୟରେ ପ୍ରକାଶ ପାଇଛି । "ମହାଭାରତର ରହସ୍ୟ" ବା "Mysteries of Mahabharat" ବୋଲି ଏକ ଉପାଦେୟ ଗ୍ରନ୍ଥ ଅଛି ।

ତେଣୁ ଏହି ସମସ୍ତ କଥା, ଉପକଥା, ଉପାଖ୍ୟାନ, ପୁରାଣ, କାବ୍ୟ ପଛରେ କିନ୍ତୁ ଗୋଟିଏ ନୀତି ଆମ୍ଭମାନଙ୍କର ଦେଖିବା ଉଚିତ; ତାହା ଦର୍ଶନ । ଦର୍ଶନ ମନୁଷ୍ୟ ଜୀବନ ସହିତ ଗଭୀର ଭାବରେ ସଂପୃକ୍ତ । ପୃଥିବୀର ବିଭିନ୍ନ ଘଟଣାବଳୀର ଏକ ଗଭୀର ଐତିହାସିକ ପଠନ ଦ୍ୱାରା ଆମ୍ଭମାନେ କେତେଗୁଡ଼ିଏ ସାଧାରଣ ନିୟମରେ ପହଞ୍ଚିବା । ଆମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ଦ୍ରଷ୍ଟା ବା ଦାର୍ଶନିକ, ସେମାନେ ସୂକ୍ଷ୍ମ ବିଶ୍ଳେଷଣ ପ୍ରୟୋଗ କରି ଏପରି କେତେଗୁଡ଼ିଏ ସତ୍ୟରେ ପହଞ୍ଚି ଅଛନ୍ତି ମାତ୍ର । ସେମାନଙ୍କ ମିଳିତ ନୀତିହିଁ ଦର୍ଶନଶାସ୍ତ୍ରରେ ଲିପିବଦ୍ଧ ।

ବିଶ୍ୱ-ଇତିହାସରେ ଗୋଟିଏ ଶକ୍ତି ପ୍ରବଳ ହୋଇଅଛି ଏବଂ ଆମର ସମସ୍ତ ସଭ୍ୟତା, ସଂସ୍କୃତି ଆମକୁ ଏମିତି ଏକ ଅବସ୍ଥାକୁ ଆଣିଅଛି ଯେ ଆମ୍ଭେମାନେ ଆଉ ଏକ ସ୍ୱତନ୍ତ୍ର ଦେଶ ବା ଜାତି ମଧ୍ୟରେ କେବଳ ଆମକୁ ବାନ୍ଧି ରଖି ପାରିବା ନାହିଁ । ବିଶ୍ୱ-ବୋଧ ଆଜି ମାନବ-ଅନ୍ତର ସର୍ବଦା ପ୍ରଧାବିତ । ଏହା ଏହି ଯୁଗର ଶ୍ରେଷ୍ଠ ବାଣୀ । ହୁଏତ ଜାତୀୟତା

ଅନ୍ତର୍ଜାତୀୟତାକୁ କ୍ଷଣକାଳ ପାଇଁ ଦବାଇ ଦେଇପାରେ, ତଥାପି ଜାତୀୟତା ନୁହେଁ ଅନ୍ତର୍ଜାତୀୟତାର ନିୟମଙ୍କୁ ବାଧାବାଧି ହେଉଛି ।

ଜାତୀୟ-ସ୍ଥିତି ମୁଁ ସ୍ୱୀକାର କରୁଅଛି । କିନ୍ତୁ ଏହାର ପରିଣତି ବିଶ୍ୱବ୍ୟାପୀ ମହା ଜାତୀୟତାରେ—ଖଣ୍ଡସଂପର୍କ ଶୂନ୍ୟ ପ୍ରାଦେଶିକତାରେ ନୁହେଁ । କେବଳ ଖଣ୍ଡ ନୁହେଁ, ଅଖଣ୍ଡକୁ ଆନନ୍ଦଦାୟକ । କେବଳ କେନ୍ଦ୍ରର ନୁହେଁ, କେନ୍ଦ୍ରର ଯେଉଁ ଉଲ୍ଲଙ୍ଘନ, ଆମର ଲକ୍ଷ୍ୟ ହେବା ଉଚିତ । ଜୀବନଭୂମିରେ ଅଦ୍ୱୈତ ଏହି ଏକତ୍ୱବୋଧ ଏବଂ ବିଶ୍ୱବୋଧର ବାଣୀ ବହୁଦିନରୁ ପ୍ରଚୁର କରି ଆସିଅଛି । ଅବଶ୍ୟ ଅଦ୍ୱୈତ ବାଦ ରାଷ୍ଟ୍ରନୀତିକ କିମ୍ବା ଅର୍ଥନୀତିକ ବିଶ୍ୱ-ବୋଧଠାରୁ ଗଭୀର, ଉଚ୍ଚତର ଓ ପ୍ରଶସ୍ତ ଭିତ୍ତିରେ ସ୍ଥାପିତ । 'ଅଦ୍ୱୈତବାଦ'ରେ ଆମ୍ଭେମାନେ ଦେଖୁଁ ଯେ ଏକ ବ୍ରହ୍ମ ସର୍ବତ୍ର ସ୍ଫୁରିତ । ସବୁ ଏକ । ଏକରୁ ବହୁ । ବହୁ ମଧ୍ୟରେ ଏକ । ପ୍ରଜ୍ଞା ଭୂମିରେ ଏକହିଁ ସତ୍ୟ । କିନ୍ତୁ ବ୍ୟାବହାରିକ ଜଗତରେ ପୁଣି ବର୍ଣ୍ଣ, କର୍ମର ଭେଦ ବା ନାମ-ରୂପ ଜଗତର ସ୍ଥିତି । ଜଗତ ମାୟା ବା ରହସ୍ୟମୟ; କିନ୍ତୁ ମିଛ ନୁହେଁ । ଜଗତ ମିଛ କେବେ ହୁଏ ନାହିଁ, ବରଂ ଏହା ସଂପୂର୍ଣ୍ଣ ସତ୍ୟରେ ପରିଣତ ହୁଏ ପ୍ରଜ୍ଞାନୁଭୂତିରେ । ଅଦ୍ୱୈତ୍ୟ-ଦର୍ଶନର ଏହି ମୂଳ ସୂତ୍ର ଓ ଶ୍ରେଷ୍ଠ ବାଣୀ ନୀତି-ମାର୍ଗପାଇଁ ପଥ ପରିଷ୍କାର କରି ଦେଇଅଛି । ସମାଜରେ ମନୁଷ୍ୟ କାହିଁକି ନୀତି ମାନିବ ? କାହିଁକି ସମାଜରେ ପ୍ରେମ, ସ୍ନେହ, ଶ୍ରଦ୍ଧା, ଭକ୍ତି ସତ୍ୟ-ବଚନ, ପରୋପକାର ଭଲ ? କାହିଁକି ହିଂସା, ଦ୍ୱେଷ, ପରନିନ୍ଦା, ପରସ୍ତ୍ରୀ-ଗମନ ଖରାପ ଅର୍ଥାତ୍ ନିନ୍ଦନୀୟ ? ଏହି ଜଡ଼ବାଦ-ଯୁଗରେ କେବଳ ଅନ୍ଧ-ନିୟମ ପ୍ରଣୟନ କରି ଦେଲେ ହେବ ନାହିଁ । କାରଣ ଦେବା ଚାହିଁ । ଏଥିପାଇଁ ନୀତି କଅଣ କହିବ ? ଆଜି ହୁଏତ ଯଦି କୌଣସି ଜାତି ଅନ୍ଧ-ଜାତୀୟତାରେ କହିବ ମୁଁ ମୋର କଥା ଜାଣେ, ଅନ୍ୟ ଜାତିମାନେ ତାହାଙ୍କ ଆମ ନୀତିରେ ବାଧା ଦେଉଛ ? କିନ୍ତୁ ଦୁନିଆରେ ସାମାଜିକ ମନୁଷ୍ୟ ହୋଇ ରହିଲେ ବ୍ୟକ୍ତି ଯେପରି ଅପର ବ୍ୟକ୍ତିର ସୁଖ-ଦୁଃଖରେ ସଂପୃକ୍ତ ହେବ, ଜାତି ମଧ୍ୟ ସେପରି ଅପର ଜାତିର ନୀତିରେ ସଂପୃକ୍ତ ହେବାକୁ ବାଧ୍ୟ । ଗ୍ରାମରେ ପଡ଼ୋଶୀ ଘରେ କଳହ ଲାଗିଲେ କିମ୍ବା ଚୋର ପଶିଲେ, ଜଣେ ଗ୍ରାମବାସୀ ସ୍ଥିର ହୋଇ ରହି ପାରିବ କି ? ସମୁଦାୟ ଗ୍ରାମ କଥା ଆମକୁ ଭାବିବାକୁ ହେବ । ଅଦ୍ୱୈତ-ଦର୍ଶନର ମୂଳ ନୀତି ଠିକ୍ ଏହି ଚିନ୍ତାକୁ ଆଶା କରେ ।

ମାନବିକ, ସାଂସ୍କୃତିକ ଓ ସାମାଜିକ ଇତିହାସ ସହିତ ଅଦ୍ୱୈତ ଦର୍ଶନର ଏହିଠାରେ ଯୋଗସୂତ୍ର ଅଛି । ବସ୍ତୁ ମଧ୍ୟରେ ଏକ, ତେଣୁ ଅନ୍ୟର ଅନିଷ୍ଟ ଦ୍ୱାରା ସେହି ଏକ ବା ଆପଣାର ଅନିଷ୍ଟ । ତେଣୁ ପରର ଅମଙ୍ଗଳ ଚାହିଁବା ଅର୍ଥ ନିଜର ଅନିଷ୍ଟ ଚାହିଁବା । ଏହିଠାରେ ନୀତି ଲାଗି ଅଦ୍ୱୈତ-ଦର୍ଶନ ଏକ ମୂଳ ଭିତ୍ତି ଦେଇଅଛି । କର୍ମ ବ୍ୟକ୍ତିର । କିନ୍ତୁ ଅନ୍ୟ ଲୋକର କର୍ମର ପ୍ରଭାବ ମଧ୍ୟ ବ୍ୟକ୍ତି ଉପରେ ଅଛି । ସଂସ୍କୃତି କିନ୍ତୁ ମଣିଷ ଜୀବନର ସକଳ ବିଭବକୁ ସ୍ପର୍ଶକରେ ନାହିଁ । ମନୁଷ୍ୟ ଜୀବନଜଟିଳ । ଜଟିଳତାର ସମାଧାନ ଲାଗି ଦର୍ଶନ ମନୁଷ୍ୟକୁ ମାନ ସାହାଯ୍ୟ କରି ପାରିବ । ମନୁଷ୍ୟର ସ୍ୱାର୍ଥ କେବଳ ମନୁଷ୍ୟ ସମାଜରେ ଆବଦ୍ଧ ନୁହେଁ । ଅଦ୍ୱୈତଦର୍ଶନ ତେଣୁ କେବଳ କହେ ନାହିଁ ଯେ ମଣିଷ ମଧ୍ୟରେ ସେହି ଏକ ବ୍ରହ୍ମଶକ୍ତି ଅଛି, ଆଉ ଅନ୍ୟ କେଉଁଠି ନାହିଁ । ପରନ୍ତୁ ଦର୍ଶନ କହେ ଯେ ସର୍ବତ୍ର ସେହି ଚିନ୍ମୟ ଶକ୍ତି ସ୍ଫୁରିତ । ସକଳ ସୀମା ସୃଷ୍ଟିର ସେହି ଅସୀମ ଭିତ୍ତି । ମାନବର ଆଧ୍ୟାତ୍ମିକ କ୍ଷୁଧା ମେଣ୍ଟାଇବା ପାଇଁ ଅଦ୍ୱୈତ ଦର୍ଶନ ସବୁଠାରୁ ଚମତ୍କାର ଚିନ୍ତାଧାରା ।

ମନୁଷ୍ୟର ଅନ୍ତର ମୃତ୍ୟୁ, ବ୍ୟାଧି, ଶୋକ, ଜରା-ଚିନ୍ତାରେ ବିଚଳିତ ହୁଏ । ମନୁଷ୍ୟ ବିରହ, ବିଚ୍ଛେଦରେ କାତର ହୁଏ । ବନ୍ଧୁ ପରିଜନଙ୍କ ମୃତ୍ୟୁ-ବିଚ୍ଛେଦରେ ମନୁଷ୍ୟ ମର୍ମାହତ ହୁଏ । କିନ୍ତୁ ଏହି ସମସ୍ତ ମାନସିକ ଅଶାନ୍ତିର ଔଷଧ କୌଣସି ସାଂସ୍କୃତିକ ପନ୍ଥା କିମ୍ବା ସରକାର ଆବିଷ୍କାର କରି ନାହିଁ ବା କରି ପାରିବ ନାହିଁ ।

ସେଥିପାଇଁ ବହୁ ଆର୍ତ୍ତ, ବହୁ ପୀଡ଼ିତ ଜନତା ଦର୍ଶନ ଭୂମିକୁ ଆସିବାକୁ ବାଧ୍ୟ । ଦର୍ଶନହିଁ ଅମୃତ-ଆନନ୍ଦ-ଜଳାଧାର । ଯୁଗଯୁଗ ଧରି ଏହି ମୃତ୍ୟୁ, କ୍ଷୟ, ପରିବର୍ତ୍ତନଶୀଳ ମାଟି-ମଞ୍ଚରେ ବୁହାଇ ପାରିଅଛି । ଦର୍ଶନ ବଜ୍ର-ନିର୍ଘୋଷ କଣ୍ଠରେ କହୁଅଛି ଯେ ମନୁଷ୍ୟ ମଧ୍ୟରେ, ବିଶ୍ୱ ଅଭ୍ୟନ୍ତରରେ ଏମିତ ଶକ୍ତି ଅଛି, ଯାହା ନିଆଁରେ ପୋଡ଼ିଯାଏ ନାହିଁ, ପବନରେ ଉଡ଼ିଯାଏ ନାହିଁ, ପାଣିରେ ବୁଡ଼ିଯାଏ ନାହିଁ, ଖରାରେ ଶୁଖି ଯାଏ ନାହିଁ କିମ୍ବା ଖଣ୍ଡାରେ ଛିଡ଼ି ଯାଏନାହିଁ । ଏକ ଅମୃତ, ଅସୀମ, ଦେଶକାଳରୁ ସ୍ୱାଧୀନ ଅନନ୍ତ ଆତ୍ମା-ଶକ୍ତି ବିଶ୍ୱର ମୂଳାଧାର । ଏହା ପୂର୍ଣ୍ଣ । ଏହାକୁ ଆଶ୍ରା କରି ସୃଷ୍ଟି । ମୁଁ 'ଅଜନ୍ମା' ଓ ଅମୃତ । ତେଣୁ 'ମୁଁ' ଜନ୍ମ, ଜରା, ବ୍ୟାଧି, ମୃତ୍ୟୁ ଅର୍ଥାତ୍ କ୍ଷୟ-ବୃଦ୍ଧିର ଅତୀତ । ଏହା ଠାରୁ ମନୁଷ୍ୟ କଅଣ ବେଶୀ ଆନନ୍ଦ ଓ ଆଶାର ବାଣୀ ଶୁଣିପାରେ ?

ପୁଣି ଏହି କ୍ଷୁଦ୍ର 'ମୁଁ' ଏକ ବିଶ୍ୱବ୍ୟାପୀ ମହାଚେତନ । ତେବେ ଦୁଃଖ କାହିଁକି ? ବିରହ, ବିଚ୍ଛେଦ କେଉଁଠି ? ଏହାଠାରୁ କି ମହନୀୟ ବାଣୀ ମନୁଷ୍ୟ ଶୁଣିପାରେ ? ଏହାଠାରୁ କି ସୁନ୍ଦର, ମୁକ୍ତୀଶ୍ରୀ ମନୁଷ୍ୟ ଆଶା କରିପାରେ ?

ମନୁଷ୍ୟର ବିକାଶ-ଇତିହାସରେ ବହୁ 'ଦଳପତି' । ଗ୍ରାମକୁ ନେଇ ଦଳ, ପୁଣି ଜାତିକୁ ନେଇ ଦଳ । ଦଳ ଥିଲେ 'ଦଳପତି' । ବିଶ୍ୱ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ଯେପରି 'ବହୁଦେବ' କିମ୍ବା 'ଦ୍ୱୈତ-ବାଦର'ର କଳ୍ପନା ଥିଲା । ଆଜିପାଏଁ ଯେପରି ସାମନ୍ତ-ପ୍ରଥା ସମ୍ପୂର୍ଣ୍ଣ ଲୋପ ପାଇ ନାହିଁ, ସେହିପରି ଅଦ୍ୱୈତ-ବାଦ ଭଳି ଲୋକଶାସନ ବା ସାମ୍ୟବାଦ ପ୍ରତିଷ୍ଠାନ ଯୁଗରେ ମଧ୍ୟ ଏହି ଦ୍ୱୈତ, ବହୁଦେବ ବିଶ୍ୱାସ ଅଛି । ସେଥିରେ ବିଚଳିତ ହେବାର କିଛି ନାହିଁ । ମୂଳନୀତି ଆମର ଠିକ୍ ଥିଲେ, ଅର୍ଥାତ୍ ବିଭିନ୍ନତା ପଛରେ 'ଏକତା ଜ୍ଞାନ' ମୂଳକ ଜାଗରୂକ ଥିଲେ, ଆମ୍ଭେମାନେ ସକଳ ମତଭେଦକୁ ବୈଚିତ୍ର୍ୟ ରୂପେ ଦେଖିବୁଁ । ଆମ୍ଭେମାନେ କହିବୁ ଯେ ଏକ ସତ୍ୟକୁ ପଣ୍ଡିତମାନେ ବହୁ ଭାବରେ କହନ୍ତି । ରାଜତନ୍ତ୍ର, ଡିକ୍ଟେଟରସିପ୍ ଲୋକଶାସନ, ସାମ୍ୟବାଦ, ନାଜିଜମ୍ ସବୁ ଏହି ଏକର ବିଭିନ୍ନ ପ୍ରକାଶ ମାତ୍ର । ସବୁଠି ଲୋକେ ପ୍ରଧାନ ।

ପ୍ରକୃତରେ ଆଦର୍ଶ ଦିଗରୁ ସବୁ ରାଷ୍ଟ୍ରନୀତିକ ମତବାଦର ଲକ୍ଷ୍ୟ ବହୁ ଲୋକଙ୍କର ମଙ୍ଗଳ ସାଧନ କରିବା । କିନ୍ତୁ ଦୁଃଖର ବାସ୍ତବତାରେ ଫଳ ପୃଥକ ହେଉଛି ପ୍ରୟୋଗର ପାର୍ଥକ୍ୟ ହେତୁ ।

କିନ୍ତୁ ଏହି ମୂଳ ଦର୍ଶନ ବ୍ୟତୀତ ଆମକୁ ଆଉ ଗୋଟିଏ ନୀତି ପ୍ରତି ଦୃଷ୍ଟି ଦେବାକୁ ହେବ । ବିଜ୍ଞାନରେ ବିବର୍ତ୍ତନ ବାଦ ( The theory of Evolution) ଜଗତକୁ ଗୋଟିଏ ବଡ଼ ଦାନ । ବୈଜ୍ଞାନିକ ବିଶ୍ୱ-ସତ୍ୟର ମୀମାଂସା ବିଶ୍ୱ-ସାହାଯ୍ୟରେ କରିବାକୁ ଗ୍ରହଁନ୍ତି । ଭଲ କଥା । ଦର୍ଶନରେ ଆମ୍ଭେମାନେ ଗୋଟିଏ ନିୟମ ଶୁଣୁ; ତାହା କର୍ମ-ନିୟମ । ଏହା ଏକ ଅତି ପୁରାତନ ଯୁଗର ବାଣୀ । ବୌଦ୍ଧ ଧର୍ମ ପ୍ରଚାର ବେଳେ ବୁଦ୍ଧ ଏହା ଉପରେ ଅତି ଜୋର ଦେଇଥିଲେ । ଆଧୁନିକ ବୈଜ୍ଞାନିକ, ହେତୁବାଦୀ ମନୁଷ୍ୟମାନଙ୍କୁ ଏହାର ସୂତ୍ର ମଧ୍ୟ କୌଣସି ରହସ୍ୟମୟ ଜଣାଯିବ ନାହିଁ । ପରନ୍ତୁ ବିଶ୍ୱର ସକଳ ପରିବର୍ତ୍ତନ, ପରିବର୍ଦ୍ଧନ, ବିବର୍ତ୍ତନ, ବିଦ୍ରୋହ ବା ବିକାଶର ମୂଳରେ କର୍ମ । କର୍ମର ଫଳ ଅଛି । କର୍ମର ଗୁଣ ଯେନ ଫଳର

ତ୍ମଣ । ଏହା ଅତି ସରଳ କଥା । ଅର୍ଥାତ୍ "କ"ର ସୁ-କର୍ମ ହେଲେ, ଫଳଟା ମଧ୍ୟ 'ସୁ' ହେବ ଏବଂ 'କ'ର କର୍ମ ମନ୍ଦ ହେଲେ ଫଳ ମନ୍ଦ ହେବ ଏବଂ ମନୁଷ୍ୟ ସ୍ୱକୃତ କର୍ମର ଫଳରୁ କେବେ ନିସ୍ତାର ପାଇ ନ ପାରେ । କର୍ମ ବିଶ୍ୱ-ଜୀବନର ନିୟାମକ । ଯାହା ବ୍ୟଷ୍ଟିଠାରେ ସମ୍ଭବପର, ତାହା ଗୋଷ୍ଠୀଠାରେ ମଧ୍ୟ ସମ୍ଭବପର । କାରଣ ଗୋଷ୍ଠୀ ବ୍ୟଷ୍ଟିର ସମଷ୍ଟି ମାତ୍ର । ଅର୍ଥାତ୍ ବିଶ୍ୱର ସକଳ ବିବର୍ତ୍ତନ (Evolution) ମୂଳରେ କର୍ମ । କର୍ମ-ନିୟମ ସ୍ୱଶୃଙ୍ଖଳ ଅନାଦି ନିୟମ । ଏହା ସକଳ ଦାୟିତ୍ୱ ମୁକ୍ତ ଇଚ୍ଛୁକ ବା ସ୍ୱାଧୀନତା-ପ୍ରେମିକ ହେତୁ-ବାଦୀ ମନୁଷ୍ୟ ଉପରେ ପକାଇ ଦିଏ । ଅର୍ଥାତ୍ ମନୁଷ୍ୟର ଦୁର୍ଭାଗ୍ୟ ବା ଭାଗ୍ୟ, ପ୍ରକୃତରେ ମନୁଷ୍ୟ ଦ୍ୱାରା ସୃଷ୍ଟ । ସେଥିପାଇଁ ଆମ୍ଭେମାନେ 'ଭାଗ୍ୟ' କୁ ଅନ୍ୟଭାବରେ କହୁଁ କର୍ମଫଳ । ଅର୍ଥାତ୍ ମନୁଷ୍ୟ ଯେଉଁ କର୍ମ କରୁଛି ତାହାର ଫଳ । ଏହିଠାରେ ବିଜ୍ଞାନ ସଙ୍ଗେ ଦର୍ଶନର ସବୁଠାରୁ ବଡ଼ ବନ୍ଧୁତା । ଆତ୍ମ-ଦର୍ଶନ ଯାଏ ବିଜ୍ଞାନ' ଗତି କରି ନାହିଁ । ଅଣୁବିକ ବାଦ, (Electron theory) ବିଜ୍ଞାନର ଅଦ୍ୟାବଧି ଶେଷ ଭାଷଣ । ଏହି ଆତ୍ମ-ଦର୍ଶନ, କର୍ମ-ନିୟମକୁ ଘେନି ଦର୍ଶନର ଆଉ ଗୋଟିଏ ପାଖ କଥା ପୁନର୍ଜନ୍ମ ।

କର୍ମ ନିୟମଟାକୁ ମାନିଲେ, ଓ ଆତ୍ମ-ଦର୍ଶନର ମୂଳସୂତ୍ର ବୁଝିଲେ, ପୁନର୍ଜନ୍ମ ମାନିବା ବେଶୀ ଦୂର ନୁହେଁ । ମନୁଷ୍ୟର ଜୀବନ ସ୍ୱକର୍ମ ଦ୍ୱାରା ସୃଷ୍ଟ । ମୁଁ ଯେ ବର୍ତ୍ତମାନ ମନୁଷ୍ୟ, ଏହା ମୋର ପୂର୍ବ-କର୍ମ ଦ୍ୱାରା ନିଶ୍ଚୟ ସ୍ଥିରୀକୃତ । ନୋହିଲେ ମୋର ଏ ବିବର୍ତ୍ତନ କେଉଁଠୁ ଆସିବ ? ଅତୀତ ଚିର ମୃତ ନୁହେଁ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ପରସ୍ପର ସମ୍ପୃକ୍ତ । ପରସ୍ପର ଦ୍ୱାରା ପରସ୍ପର ପ୍ରଭାବିତ । ଜୀବନ-ପଞ୍ଝାପା ଖେଳରେ ପଞ୍ଝାପା ଦିଆ ଯାଇଛି । ପଞ୍ଝାପା ଖେଳିବାର ସ୍ୱାଧୀନତା ମନୁଷ୍ୟର ଅଛି । ଖେଳିବାର ଏ କୌଶଳ କିନ୍ତୁ ମଣିଷ ଜାଣିବା ଦରକାର ।

ମଣିଷର ଜୀବନ କେବଳ ଏକ ଜୀବନ କାଳରେ ସୀମାବଦ୍ଧ ନୁହେଁ । ବିବର୍ତ୍ତନ ପାଇଁ ବହୁକାଳ ପ୍ରୟୋଜନ । ବିବର୍ତ୍ତନ ମାନିଲେ, ତାହାର ମୂଳ-ସୂତ୍ର କର୍ମ ସ୍ୱୀକାର କଲେ ପୁନର୍ଜନ୍ମ ଆପେ ଆପେ ଆସିବ । ଅବଶ୍ୟ ଦର୍ଶନ ଶାସ୍ତ୍ରରେ ଆମ୍ଭେମାନେ ଏକ 'ଜୀବ' ବା 'ସୂକ୍ଷ୍ମ ଶରୀର'ର ପରିକଳ୍ପନା ପାଉଁ । ସେହିଟାକୁ ସେତେ କିଛି ନୂତନ କଥା ନୁହେଁ । ଆକାଶ ମୁକ୍ତ, ସର୍ବବ୍ୟାପୀ । ପୁଣି ଘଟ ମଧ୍ୟରେ ଘଟାକାଶ । ସେହିପରି ମୁକ୍ତ-ବିଶ୍ୱ-ବ୍ୟାପୀ ପରମାତ୍ମା, ପୁଣି ପ୍ରାଣି । ଅର୍ଥାତ୍ ବ୍ୟାବହାରିକ ଜଗତରେ ଥିବାଯାଏ ଏହା ବ୍ୟାବହାରିକ ଦୃଷ୍ଟିରୁ ସତ୍ୟ ।

ସେହି ଅବଶ ପରମାତ୍ମା-ଜୀବ ଦେହରେ ଆତ୍ମା । କିନ୍ତୁ 'ଜୀବ'ର ଆତ୍ମା ମଧ୍ୟ ଅନିତ୍ୟ; ତେଣୁ ମନୁଷ୍ୟ ଯେଉଁ କର୍ମ କରିବ, ତାହାର ଭୋକ୍ତା କିଏ ? ସେ ଜୀବ । ପଞ୍ଚଜ୍ଞାନେନ୍ଦ୍ରିୟ, ଜୀବ ଓ ଅବଶ ଆତ୍ମାକୁ ନେଇ ସୂକ୍ଷ୍ମଶରୀରର ଏକ ପରିକଳ୍ପନା । କର୍ମ ଯେଉଁ ଏହି ସୂକ୍ଷ୍ମ ଶରୀରର ଗତି । ପୂର୍ବଜନ୍ମ ବା ପରଜନ୍ମର କାରଣ ଏହି ଶରୀର । ତାହା ନ ହେଲେ ମୃତ୍ୟୁ ପରେ କିଏ କର୍ମ ଫଳ ଭୋଗ କରିବ; କାହା ଉପରେ କର୍ମ-ନିୟମ କାର୍ଯ୍ୟକାରୀ ହେବ ? ପଞ୍ଚଭୂତ ପଞ୍ଚଭୂତରେ ମିଳାଇ ଯିବ । ତେଣୁ ଏହି ସୂକ୍ଷ୍ମ ଶରୀରର ପରିକଳ୍ପନା ମଧ୍ୟ ହେତୁ ସମ୍ମତ ।

କର୍ମ ଯେ ବହୁଦିନ ବ୍ୟାପୀ ରହେ, ଆଉ କର୍ମର ଫଳ ଯେ ଏକ ଯୁଗରେ ଯାଏ ନାହିଁ ଏହାର ପ୍ରମାଣ ମଧ୍ୟ ଇତିହାସ ଦିଏ । ଏକ ପରାକ୍ରମୀ ରାଜ୍ୟର ଅଧଃପତନ ହଠାତ୍ ହୁଏ ନାହିଁ । ବହୁ କାରଣରୁ କ୍ରମେ କ୍ରମେ ଏକ ଶକ୍ତିଶାଳୀ ରାଜ୍ୟର ଅଧଃପତନ ଘଟେ, ସେହିପରି ଜାତିର ବା ଦେଶର ଉତ୍ଥାନ ମଧ୍ୟ ହଠାତ୍ ହୁଏ ନାହିଁ । ହୁଏତ ଏକ ଯୁଗରେ ଏହାର ଶକ୍ତି ପ୍ରକାଶିତ ହୁଏ, ହେଲେ ମଧ୍ୟ ବିକାଶ ବହୁ ପୂର୍ବରୁ ଅଜ୍ଞାତରେ ଆରମ୍ଭ ହୋଇଥାଏ । ମଣିଷ ଜୀବନ କିମ୍ବା ସୃଷ୍ଟିର କୌଣସି ପରିବର୍ତ୍ତନ ଏକ ଆକସ୍ମିକ ଘଟଣା ନୁହେଁ । ଜଗତରେ ଆକସ୍ମିକ ଇନ୍ଦ୍ରଜାଲ କିଛି ନାହିଁ । ସବୁ ନିୟମ ଦ୍ୱାରା ଶାସିତ । ନିୟମ ଏବଂ ନିୟମ କର୍ତ୍ତା ମୋ ସମ୍ମୁଖରେ ଏକ । ଏହାହିଁ ହିନ୍ଦୁ ଦର୍ଶନର ଶ୍ରେଷ୍ଠତମ ଗଭୀର ବିଶ୍ୱାସ । ବିଜ୍ଞାନ ମଧ୍ୟ ଦର୍ଶନର ଏହି ଗଭୀର ସତ୍ୟକୁ ପ୍ରତ୍ୟହ ପ୍ରମାଣିତ କରିବାକୁ ବ୍ୟଗ୍ର ।

ଭଗବାନ ? ଭଗବାନ ଅଛନ୍ତି ନା ନାହାନ୍ତି ? ମୁଁ କହିବି ଇଚ୍ଛା କଲେ ଭଗବାନ ଅଛନ୍ତି; ପୁଣି ଇଚ୍ଛା କଲେ ଭଗବାନ ନାହାନ୍ତି । ଅଦ୍ୱୈତ-ଦୃଷ୍ଟି ଦର୍ଶନର ଶ୍ରେଷ୍ଠ ଦୃଷ୍ଟି । କିନ୍ତୁ ଧର୍ମ ଭୂମିରେ ଏକ ବ୍ୟକ୍ତିଗତ ଈଶ୍ୱର ଅନେକ ମନରୁ ସ୍ଥାନ ମାଡ଼ି ବସି ଅଛନ୍ତି । ଏହାଙ୍କୁ ସାଧାରଣ ହିତ ଦୃଷ୍ଟିରୁ ବାଦ ଦେଇ ହେବ ନାହିଁ । ପୃଥିବୀର ସବୁ ଧର୍ମରେ ଈଶ୍ୱର-ବିଶ୍ୱାସ ଅଛି । ଅଦ୍ୱୈତ-ବାଦୀଙ୍କ ପାଖରେ ଦ୍ୱୈତ ନାହିଁ । ଅର୍ଥାତ୍ ତାହାଙ୍କ ନିକଟରେ ବ୍ୟକ୍ତିଗତ ଈଶ୍ୱରର ପ୍ରୟୋଜନ ନାହିଁ । ତଥାପି ଏହା ସେ ଅସ୍ୱୀକାର କରନ୍ତି ନାହିଁ । ସେ କହନ୍ତି ଏହା କେବଳ ସତ୍ୟ, ଯେପରି ବରଫ ସତ୍ୟ । ପାଣିରୁ ତ ବରଫ, ବରଫ ଭାଙ୍ଗିଲେ ତ

ଦର୍ଶନର ଏହି ମୂଳ ସୂତ୍ର ବୁଝି ବିଶ୍ୱର ମନୁଷ୍ୟ ଜୀବନ-ଯାପନ କଲେ ଯେ ଅଖଣ୍ଡ-ଆନନ୍ଦ ଅନୁଭବ କରି ପାରିବ ।

ଏହି ଦର୍ଶନ-ବାଣୀକୁ ପ୍ରଚ୍ଛଦପଟ କରି ସୁଧୀଜନ ସେମାନଙ୍କ ନିଜ ନିଜ ଜୀବନ ଓ କର୍ମକୁ ବିଶ୍ଳେଷଣ କରନ୍ତୁ । ଆମ କର୍ମ, ଆମ ଚିନ୍ତା, ଆମ ଜୀବନ-ଯାପନ ପ୍ରଣାଳୀକୁ ଠିକ୍ ଏପାଖ-ସେପାଖରୁ ଦେଖି ଶିଖିବା ପାଇଁ ଆମ୍ଭମାନଙ୍କ ଚେଷ୍ଟା କରିବା ଉଚିତ । ଏହି ଦେଖାରୁହିଁ ଆମ ଦର୍ଶନ ଫୁଟିବ ଏବଂ ଏହି ଦର୍ଶନହିଁ ଆମ ଜୀବନକୁ ପ୍ରଭାବିତ କରିବ । ବିଚାର ପ୍ରୟୋଗ କରନ୍ତୁ, 'ବିଚାର' ଦ୍ୱାରା କର୍ମ-ଧାରାକୁ ବିଶ୍ଳେଷଣ କରନ୍ତୁ, ଦେଖିବେ ଦୁଃଖ, ଶୋଚନା ବୃଥା । ମୁଁ ଅଛି ଆନନ୍ଦ-ବାର୍ତ୍ତା । ବିଚାର ଦ୍ୱାରା ଅଜ୍ଞାନ-ଅନ୍ଧାର ନାଶ କରି ବ୍ୟକ୍ତି ତଥା ବିଶ୍ୱ-ଜୀବନ କ୍ରମ-ବିକାଶ-ଶୀଳ ପୂର୍ଣ୍ଣତା-ପଥରେ ଗତି କରିପାରେ ।

---

# ମୋଗଲ୍ ରାଜନାରୀ

ମୋଗଲ ରାଜପୁରୁଷମାନଙ୍କର ଜୟ-ପରାଜୟ, କୀର୍ତ୍ତି କାହାଣୀରେ ଭାରତ ଇତିହାସର ବହୁ ପୃଷ୍ଠା ପୂର୍ଣ୍ଣ ହୋଇଅଛି । କିନ୍ତୁ ମୋଗଲ ଯୁଗର ରାଜ-ନାରୀମାନଙ୍କ ଜୀବନ ବୃତ୍ତାନ୍ତ ଅତୀତର ଅନ୍ଧକାର ଛନ୍ନ ଅନ୍ଦର-ମହଲରେ ଚିର ଅବଗୁଣ୍ଠିତ । ମୋଗଲ ରାଜ-ବଂଶ ସମ୍ପର୍କରେ ସାଧାରଣ ଇତିହାସ ପୁସ୍ତକରୁ ଆମ୍ଭେମାନେ ଯେଉଁ ସବୁ ସମ୍ବାଦ ପାଉଁ, ସେଥିରୁ ମନେ ହୁଏ ଯେପରି ମୋଗଲ ରାଜ-ନାରୀ କେବଳ ରାଜପୁରୁଷ ମାନଙ୍କର ଏକ ବିଳାସ-ସାମଗ୍ରୀ ବା ପ୍ରେମର ପଣ୍ୟ ଦ୍ରବ୍ୟ ହୋଇ ରହିଥିଲେ । ପୁଣି କେତେକ ଇଉରୋପୀୟ ଭ୍ରମଣକାରୀ ଯଥା—ଇଟାଲୀୟ ମାନୁଚି, ବାର୍ଣ୍ଣିୟାର ଓ ପର୍ବ୍ରାଜକ ଫିଲେଟ ପ୍ରଭୃତି କୌଣସି କୌଣସି ପ୍ରସିଦ୍ଧ ମୋଗଲ ରାଜ-ନାରୀଙ୍କ ସମ୍ବନ୍ଧରେ (ଜାହାନ୍‌ଆରା ଓ ଜେବ ଉନ୍ନିସା) ମଧ୍ୟ ବହୁ କୁତ୍ସା କଳଙ୍କ-କାହାଣୀ ଲିପିବଦ୍ଧ କରିବାକୁ ଭୁଲି ନାହାନ୍ତି । କିନ୍ତୁ ଗବେଷକମାନଙ୍କ ଚେଷ୍ଟାରୁ ମୋଗଲ ରାଜନାରୀମାନଙ୍କ ସମ୍ବନ୍ଧରେ ଯେଉଁ ନୂଆ ନୂଆ ତଥ୍ୟ ସବୁ ସଂଗୃହୀତ ହୋଇ ଅଛି, ତହିଁରୁ ସହଜରେ ପ୍ରମାଣିତ ହୁଏ ଯେ ମୋଗଲ ରାଜନାରୀମାନଙ୍କ ମଧ୍ୟରେ ବହୁ ବିଦୁଷୀ, ସୁଶିକ୍ଷିତା, ନାନା ସଦ୍‌ଗୁଣଭୂଷିତା କନ୍ୟା, ବଧୂ, ଓ ଧାତ୍ରୀ ଥିଲେ । ଏମାନଙ୍କୁ ଇତିହାସ ଯଥାର୍ଥ ସମ୍ମାନ

ଦେଇ ନାହିଁ । ତୁଏ ତ ରାଜପୁରୁଷମାନଙ୍କ କୀର୍ତ୍ତି କାହାଣୀ ଭଳି ଏହା ପ୍ରଚଳିତ ଇତିବୃତ୍ତ ପୁସ୍ତକ ପୃଷ୍ଠାରେ ପ୍ରକୃତ ରୂପେ ଲିପିବଦ୍ଧ ହୋଇପାରି ନାହିଁ, କିନ୍ତୁ ପୁରୁଷର ଅର୍ଦ୍ଧାଙ୍ଗିନୀ, ସଖୀ ନାରୀର ପ୍ରଭାବ ଯେ ମୋଗଲ ରାଜପୁରୁଷ ମାନଙ୍କ ଉପରେ ଗଭୀର ଭାବରେ ପଡ଼ିଥିଲା, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ନାରୀ. ପୁରୁଷର ହୃଦୟରେ ଯେଉଁ ଗଭୀର ରେଖାପାତ କରେ, ତାହା ସହଜରେ ଲିଭେ ନାହିଁ । ମନୁଷ୍ୟୋଚିତ ଦୁର୍ବଳତା ବା ସ୍ଖଳନ କାହାର କାହାର ଚରିତ୍ରରେ ଦେଖା ଯାଇ ପାରିଥାଏ; ମାତ୍ର ତାହା ସଙ୍ଗେ ସଙ୍ଗେ ସେମାନଙ୍କର ଯେ ଅନେକ ସୁଗୁଣ ଥିଲା, ତାହା ଆମ୍ଭମାନଙ୍କର ସ୍ମରଣ ଏବଂ ଆଲୋଚନା କରିବା ଉଚିତ । ତେଣୁ ସେହି ଅତୀତ ମୋଗଲ ରାଜତ୍ୱର କେତେକ ପ୍ରଧାନ ପ୍ରଭାବଶାଳିନୀ ନାରୀ-ଚରିତ୍ରର ବିବରଣୀ ସଂଗ୍ରହ କରି, ସଂକ୍ଷିପ୍ତ ଆଲୋଚନା କରାଯାଉଅଛି ।

ଗୁଲ୍ ବଦନ—ଗୁଲ ବଦନ ମୋଗଲ ସାମ୍ରାଜ୍ୟ ସ୍ଥାପୟିତା ବାବରଙ୍କର କନ୍ୟା, ହୁମାୟୁନଙ୍କ ଭଉଣୀ । ଖ୍ରୀ: ଅ: ୧୫୨୩ ରେ ସେ କାବୁଲଠାରେ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ମାତାଙ୍କ ନାମ ବେଗମ୍ ଦାଲିଦାର୍ । କିନ୍ତୁ ବାବରଙ୍କ ପ୍ରିୟତମା ପତ୍ନୀ ମାହମ୍ ଏହାଙ୍କୁ ପାଳିତା କନ୍ୟା ରୂପରେ ଗ୍ରହଣ କରି ଥିଲେ । ଏହି ନାରୀ ବିଦ୍ୟା ଦାନ ଏବଂ ପୁଣ୍ୟ କାର୍ଯ୍ୟ ଲାଗି ପ୍ରସିଦ୍ଧି ଲାଭ କରିଥିଲେ । ଗୁଲବଦନ୍, ବାବର, ହୁମାୟୁନ ଓ ଅକବର ତିନୋଟି ମୋଗଲ ସମ୍ରାଟଙ୍କ ରାଜତ୍ୱ ନିଜ ଆଖିରେ ଦେଖିଥିଲେ । ତଥାପି. ସେ ତାଙ୍କର ଦୀର୍ଘ ଜୀବନକାଳ ମଧ୍ୟରେ କେବେ ରାଜକାର୍ଯ୍ୟରେ ହସ୍ତକ୍ଷେପ କରି ନ ଥିଲେ । ଏହି ରାଜ ନାରୀଙ୍କ ପ୍ରସିଦ୍ଧ ସାହିତ୍ୟ-କୀର୍ତ୍ତି ହେଉଛି 'ହୁମାୟୁନନାମା' । ଜୀବନର ଉତ୍ଥାନ ପତନ ଏବଂ ଜଟିଳତା ସମ୍ବନ୍ଧରେ ଏହାଙ୍କର ପ୍ରଚୁର ଅନୁଭୂତି ଥିଲା ।

ମୋଗଲ ଇତିହାସ ସଂଗ୍ରହ ଦିଗରୁ ଏହି ବହି ଖଣ୍ଡିକର ପ୍ରାଧାନ୍ୟ ସହଜରେ ଉପଲବ୍ଧି ହୁଏ । 'ହୁମାୟୁନ-ନାମା' ସମ୍ରାଟ ଅକବରଙ୍କ ଆଦେଶାନୁସାରେ ଗୁଲ ବଦନ୍‌ଙ୍କ ଦ୍ୱାରା ଲିଖିତ ହୋଇଥିଲା । 'ଅକବର ନାମା' ଲିପିବଦ୍ଧ ହେବା ପୂର୍ବରୁ ଏହି ଗ୍ରନ୍ଥ ଲିପିବଦ୍ଧ ହେବା ପାଇଁ ସମ୍ରାଟ ଅକବରଙ୍କ ଦ୍ୱାରା ଆଦେଶ ପ୍ରଚାରିତ ହୋଇଥିଲା । 'ହୁମାୟୁନ ନାମା' ସମ୍ଭବତଃ ଖ୍ରୀଃ ଅଃ ୧୫୮୭ ରେ ଲିଖିତ ହୋଇଥିଲା । ବର୍ତ୍ତମାନ ଏହି ଗ୍ରନ୍ଥ ଖଣ୍ଡିକର ପାଣ୍ଡୁଲିପି ବ୍ରିଟିଶ ମ୍ୟୁଜିୟମରେ ରକ୍ଷିତ ହୋଇଅଛି । ଖ୍ରୀଃ ଅଃ

୧୮୬୮ରେ କର୍ଣ୍ଣେଲ ଜର୍ଜ ଉଇଲିଅମ ହାମିଲଟନଙ୍କ ପତ୍ନୀଙ୍କ ଠାରୁ ଏହା ବ୍ରିଟିଶ ମ୍ୟୁଜିୟମ କିଣି ନେଇଥିଲା । ଏହି ବହିର ଇଂରେଜି ଅନୁବାଦ ମଧ୍ୟ ହୋଇଅଛି । ବେଭରିଜ୍ ସାହେବଙ୍କ ପତ୍ନୀ ଏହାର ଅନୁବାଦିକା । ସମ୍ରାଟ ଆକବର ଆଦେଶ ପ୍ରଚାର କରିଥିଲେ, "ବାବର ଓ ହୁମାୟୁନଙ୍କ ବିଷୟରେ ଯାହା ଜାଣ ଲେଖ ।" ତେଣୁ ଗୁଲ୍ ବଦନ୍ ଏହି ରାଜାଜ୍ଞାନୁସାରେ 'ହୁମାୟୁନ-ନାମା' ପ୍ରଣୟନ କରିଥିଲେ ।

ହୁମାୟୁନନାମାରେ ପ୍ରଥମେ ବାବରଙ୍କ ବିବରଣୀ ପ୍ରଦତ୍ତ । ଏହା ଅଧିକାଂଶ ବାବରଙ୍କ ଆତ୍ମଜୀବନୀ ଅବଲମ୍ବନରେ ଲିଖିତ । କାରଣ ବାବରଙ୍କ ମୃତ୍ୟୁ ସମୟରେ ଗୁଲ୍ ବଦନ୍‌ଙ୍କର ବୟସ ମାତ୍ର ଆଠ ବର୍ଷ । ରାଜତ୍ୱ ସମ୍ବନ୍ଧରେ ଗୁଲ୍ ବଦନଙ୍କ ପ୍ରତ୍ୟକ୍ଷ ଜ୍ଞାନ ଖୁବ୍ ଅଳ୍ପ । ବ୍ରିଟିଶ ମ୍ୟୁଜିୟମରେ ରକ୍ଷିତ ହୁମାୟୁନ ନାମା ଖଣ୍ଡିକ ଅସମ୍ପୂର୍ଣ୍ଣ । ଏହାର ଶେଷାଂଶର କେତେକ ପୃଷ୍ଠା ଛିଡି ଯାଇଛି । ହୁମାୟୁନଙ୍କ ଦ୍ୱିତୀୟ ଥର ଭାରତ ସିଂହାସନ ଲାଭର ଅଭିଯାନ ଏହି ଶେଷ ଅଂଶରେ ବର୍ଣ୍ଣିତ । ଗୁଲବଦନ ଏହି ବହି ଖଣ୍ଡି ରଚନା କରିବା ଦ୍ୱାରା ମୋଗଲ-ଇତିହାସ ସଙ୍କଳନରେ ପ୍ରଭୂତ ସାହାଯ୍ୟ କରି ଯାଇ ଅଛନ୍ତି ।

କିନ୍ତୁ ଗୁଲ ବଦନ୍ ଐତିହାସିକ ଭାବରେ ଏହି ବହି ଖଣ୍ଡି ଲେଖି ନାହାନ୍ତି । ନାନାସ୍ଥାନରେ ସେ ନିଜର ଭାଇଙ୍କ ତ୍ରୁଟି ଲୁଚାଇବାକୁ ଚେଷ୍ଟା କରି ଅଛନ୍ତି । ଏହା ଗୁଲ ବଦନଙ୍କ ଭଳି ସ୍ନେହ-ବତ୍ସଳା ଭଉଣୀଙ୍କ ପକ୍ଷରେ ମଧ୍ୟ ସ୍ୱାଭାବିକ । ଐତିହାସିକମାନଙ୍କ ମତରେ 'ହୁମାୟୁନନାମା' ପ୍ରଦତ୍ତ ତଥ୍ୟ ମାନ ବିନା ବିଚାରରେ ଗ୍ରହଣ କରିବା ସହଜ ନୁହେଁ ।

ଗୁଲ ବଦନ୍ କେବଳ 'ହୁମାୟୁନନାମା'ର ରଚନାରେ ତାହାଙ୍କ ସାହିତ୍ୟିକ କୀର୍ତ୍ତି ଶେଷ କରି ନ ଥିଲେ । ସେ ବହୁ ପାର୍ଶୀ କବିତା ମଧ୍ୟ ରଚନା କରି ଥିଲେ । କବିତାରଚନା ବ୍ୟତୀତ ସେ ତାହା ପଢ଼ିବାକୁ ଖୁବ୍ ସୁଖକର ମଣୁଥିଲେ । ସେ ଏଥିପାଇଁ ଏକ ପୁସ୍ତକାଗାର ମଧ୍ୟ ପ୍ରତିଷ୍ଠିତ କରାଇ ଥିଲେ । ଗୁଲ ବଦନ୍‌ଙ୍କ ପାର୍ଶୀ କବିତାର ନମୁନା ବିଶେଷ ଦେଖିବାକୁ ମିଳେ ନାହିଁ । କିନ୍ତୁ ଅନ୍ୟ ଏକ ବହିରେ ଗୁଲ ବଦନ୍‌ଙ୍କ ତଳଲିଖିତ ଦୁଇଟି କବିତା-ପଂକ୍ତି ଉଦ୍ଧୃତ ହେବାର ସୌଭାଗ୍ୟ ଲାଭ କରିଅଛି । ତହିଁରୁ ଗୁଲ ବଦନ୍‌ଙ୍କ କବିତ୍ୱ ଶକ୍ତିର କିଞ୍ଚିତ ଆଭାସ ମିଳିବ ।

"ହର ପର୍ଯ୍ୟ ବେଜବା ଅଶିକ୍-ଇ-ଖୁଦ୍
ଇସ୍ଥାର ନୀସ୍ତ
ତୂ ଇସ୍ତାକୀନ ମୀଦାନ୍ କୁଟହତ୍
ଅଜ୍ ଉମର୍ ବର୍-ଖୁରଦାର ନୀସ୍ତ"

ଅର୍ଥାତ୍ ପ୍ରତ୍ୟେକ ପରୀ ନିଜ ପ୍ରେମିକ ପ୍ରତି ବିମୁଖ ! କିନ୍ତୁ ଏହା ନିଶ୍ଚିତରୂପେ ଜାଣ ଯେ ତୁମେ ଜୀବନ-ଫଳ ପୂର୍ଣ୍ଣ ଭାବରେ ଆସ୍ୱାଦନ କରି ନାହଁ ।

ଖ୍ରୀ: ଅ: ୧୬୦୩ ଫେବୃୟାରୀ ମାସରେ ଅଶୀ ବର୍ଷ ବୟସରେ ଗୁଲବଦନ୍ ଆଗ୍ରାଠାରେ ପ୍ରାଣତ୍ୟାଗ କରିଥିଲେ ।

ସଲୀମା ସୁଲତାନ ବେଗମ—ସମ୍ରାଟ ଅକବରଙ୍କ ହାରେମ (ନବର)ରେ ଆମ୍ଭେମାନେ . ଅତି ଜଣେ ସୁଚତୁରା, ବୁଦ୍ଧିମତୀ ନାରୀଙ୍କର ପରିଚୟ ପାଉଁ । ଏହି ନାରୀ ବାକ୍‌ପଟୁତା ପାଇଁ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ସଲୀମା ବାବରଙ୍କ ଦୌହିତ୍ରୀ ହୁମାୟୁନଙ୍କ ବୈମାତ୍ରେୟ ଭଗ୍ନୀର କନ୍ୟା । ହୁମାୟୁନ ଶେରସାହଙ୍କ ଦ୍ୱାରା ସିଂହାସନ ବିଚ୍ୟୁତ ହୋଇ ଯେତେବେଳେ 'ଫକୀର ଦୀକ୍ଷା' ଗ୍ରହଣ କରିବାକୁ କଳ୍ପନା କରୁଥିଲେ, ସେତେବେଳେ ବୈରାମ ଖାଁ ତାହାଙ୍କୁ ପାରସ୍ୟ ସମ୍ରାଟଙ୍କର ସହାୟତା ନେବାପାଇଁ ଉପଦେଶ ଦେଇଥିଲେ । ଏହି କାରଣରୁ ହୁମାୟୁନ ପୁଣି ଦିଲ୍ଲୀ ବାଦ୍‌ଶାହ ହେଲେ ଏବଂ ବୈରାମ ଖାଁଙ୍କ ସହିତ ସଲୀମାଙ୍କୁ ବିବାହ ଦେଇ ତାହାଙ୍କୁ କୃତଜ୍ଞତା ଜ୍ଞାପନ କରିଥିଲେ । ବୈରାମ ଖାଁ ରାଜ-ଆତ୍ମୀୟ ହେବାର ଗୌରବ ବେଶୀ ଦିନ ଲାଭ କରି ପାରି ନ ଥିଲେ । ବୈରାମଙ୍କ ମୃତ୍ୟୁ ପରେ ତାଙ୍କର ବିଧବା ପତ୍ନୀ, ସଲୀମାଙ୍କୁ ଅକବର ନିଜେ ପତ୍ନୀ ରୂପେ ବରଣ କରି ନେଇଥିଲେ ।

ସଲୀମାଙ୍କର ନିଜର ପୁଅ ଝିଅ କେହି ନ ଥିଲେ । ତେଣୁ ସେ ଅକବରଙ୍କ ପୁତ୍ର ସେଲିମ ବା ଜାହାଙ୍ଗୀରଙ୍କୁ ଖୁବ୍ ସୁଖ ପାଉଥିଲେ । ଯେତେବେଳେ ସେଲିମ ଅକବରଙ୍କ ବିରୁଦ୍ଧରେ ବିଦ୍ରୋହ କରି ଥିଲେ, ସେତେବେଳେ ସଲୀମା ନିଜେ ଏଲହାବାଦ ଯାଇ ତାହାଙ୍କୁ ସୁପରାମର୍ଶ ଦେଇ ଅକବରଙ୍କ ନିକଟକୁ ଆଣିଥିଲେ । ସଲୀମାଙ୍କ ମଧ୍ୟସ୍ଥତାରେ ହିଁ ପିତା-ପୁତ୍ରଙ୍କ କଳହ ସମାଧାନ ହୋଇଥିଲା ।

ସଲୀମା ଖୁବ୍ ଅଧ୍ୟୟନ ପ୍ରିୟା ଥିଲେ । ଏପରିକି ସଂସ୍କୃତ "ବତିଶ-ସିଂହାସନ" ସଲୀମା ପଢ଼ିଥିଲେ ବୋଲି ବଦାୟୁନୀ ଉଲ୍ଲେଖ କରି ଅଛନ୍ତି । ଏହା ବ୍ୟତୀତ ସଲୀମାଙ୍କର କବିତା ରଚନାରେ ବିଶେଷ ପାରଦର୍ଶିତା ଥିଲା ।

ମକ୍ଫୀ (ଗୁପ୍ତ ବ୍ୟକ୍ତ) ବୋଲ ଛଦ୍ମ ନାମ ଦେଇ, ସେ ଅନେକ ଫାର୍ଶୀ କବିତା ରଚନା କରିଥିଲେ । ସଲିମାଙ୍କ ଯେଉଁ କବିତା ପଂକ୍ତି ଦୁଇଟି ସେ ସମୟରେ ପ୍ରସିଦ୍ଧି ଲାଭ କରିଥିଲ, ତାହା ୧୦ାରେ ଉଲ୍ଲେଖ କରି ଯାଉଅଛୁ :—

"ତାକୁଲାୟ୍ ଗ୍ରମନ କେସସ୍ତୀ
ହୃଷ୍ଟତା-ଇ-ଜାନ ଗୋଫାତା ଅମ୍;
ଗସ୍ତ ବୁଦମ୍ ଙ୍ଗାଁ ସବବ୍
ଦୁର୍ଫ-ଇ-ପରେଶାନ ଟ୍ଗୋଫତା ଅମ୍ ।"

ଅର୍ଥାତ୍ ମୋହ ବଶରେ ତୁମ୍ଭର ଚଅଁର କେଶଗୁଚ୍ଛକୁ ଜୀବନ-ସୂନ୍ଦ କହୁଛି; ଏହା ଉନ୍ମତ୍ତର ପ୍ରଲାପ ମାତ୍ର ।

ସଲିମା ଧର୍ମ ପ୍ରାଣା ଏବଂ ସୁଶିକ୍ଷିତା ଥିଲେ । ତାହାଙ୍କ ମାନସିକ ଉତ୍କର୍ଷର ବର୍ଣ୍ଣନା ତୁଜୁକ୍-ଇ-ଜାହାଙ୍ଗୀରିରେ ମିଳେ ।

ମାହମ ଆନ୍‌ଗା—ଏହି ସମୟରେ ଅନ୍ୟ ଜଣେ ପ୍ରତିଭାଶାଳିନୀ ନାରୀ ଅକବରଙ୍କ ହାରମରେ ଥିଲେ । ତାହାଙ୍କ ନାମ ମାହମ ଅନ୍‌ଗା । ମାହମ ଅନଗା ସମ୍ରାଟ ଅକବରଙ୍କ ପ୍ରଧାନ ଧାତ୍ରୀ ଥିଲେ । ମାହମ ସୁଶିକ୍ଷିତା ଥିଲେ ଏବଂ ଶିକ୍ଷାର ପ୍ରଚାର ପାଇଁ ଦିଲ୍ଲୀରେ ଏକ ମାଦ୍ରାସା ସ୍ଥାପନ କରି ଥିଲେ । ଏହି ମାଦ୍ରାସାର ନାମ ଥିଲ "ମାହମ ଅନ୍‌ଗାର ମାଦ୍ରାସା ।" ବର୍ତ୍ତମାନ ଏହା ଲୁପ୍ତ ହୋଇଅଛି । ମାତ୍ର ଏହି ମାଦ୍ରାସାର ପ୍ରତିଚ୍ଛବି Hearns' Seven Sights of Delhi ପୁସ୍ତକରେ ଦେଖିବାକୁ ମିଳେ ।

ନୁରଜାହାନ୍—ମୋଗଲ ରାଜତ୍ୱର ମୋଗଲ ନାରୀମାନଙ୍କ ମଧ୍ୟରେ ନୂରଜାହାନଙ୍କ ନାମ ଓ ଖ୍ୟାତି ସହିତ ଆମ୍ଭେମାନେ ବେଶୀ ପରିଚିତ । ବିଦ୍ୟା, ବୁଦ୍ଧି, ସୌନ୍ଦର୍ଯ୍ୟବୋଧ, କଳାକୁଶଳତା, ରୂପଲାବଣ୍ୟ ସମସ୍ତ ଗୁଣରେ ନୁରଜାହାନ ସେ ଯୁଗର ରାଜନାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ଥିଲେ । ସେଥିପାଇଁ ରସିକ-ସମ୍ରାଟ୍ ଜାହାଙ୍ଗୀର ତାହାଙ୍କ ନାମ ଦେଇଥିଲେ "ନୂରଜାହାନ ।"

ନୁରଜାହାନଙ୍କ ପ୍ରକୃତ ନାମ ମିହିର୍ ଉନ୍ନିସା । ଜାହାଙ୍ଗୀର କିଶୋର ବୟସରେ କାନ୍ତିମତୀ କିଶୋରୀ ମିହିର୍ ଉନ୍ନିସାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ହୁଏ ତ ଉଭୟଙ୍କ ପ୍ରାଣରେ ଉଭୟଙ୍କ ପ୍ରତି ଅନୁରାଗ ଜାତ ହୋଇଥିଲ । କିନ୍ତୁ ଅକବର ଏହି ମିଳନକୁ ପସନ୍ଦ କରି ନ ଥିଲେ । କାରଣ ମିହିର୍

ଉନ୍ନିସା ଜଣେ ସାମାନ୍ୟ ସାଧାରଣ ମୁସଲମାନର କନ୍ୟା । ତେଣୁ ମୋଗଲ୍ ସମ୍ରାଟ୍ ଅକବରଙ୍କ ଜ୍ୟେଷ୍ଠ ପୁତ୍ର ସଙ୍ଗେ ତାହାଙ୍କର ବିବାହ-କଳ୍ପନା କିପରି ସମ୍ଭବପର ହୋଇପାରେ ?

କିନ୍ତୁ ଅକବରଙ୍କ ମୃତ୍ୟୁ ପରେ ପରେ ଜାହାଙ୍ଗୀର ତାହାଙ୍କ କିଶୋର ସ୍ୱପ୍ନ ଭୁଲି ପାରିଲେ ନାହିଁ । ବିଶ୍ୱ ବିଜୟୀ ବା 'ଜାହାଙ୍ଗୀର' ଉପାଧି ନେଇ ସେଲିମ୍ ସିଂହାସନ ଗ୍ରହଣ କଲେ ମଧ୍ୟ ନିଜର ହୃଦୟକୁ ଜୟ କରି ପାରି ନ ଥିଲେ । ମିହିର୍ ଉନ୍ନିସାଙ୍କ ବିବାହିତ ସ୍ୱାମୀଙ୍କୁ ମାରି କିପରି ଏହାଙ୍କୁ ଜାହାଙ୍ଗୀର ନିଜ ପ୍ରାସାଦକୁ ଆଣିଥିଲେ, ତାହା ଇତିହାସର ଅତି ପରିଚିତ କାହାଣୀ ।

ମିହିର୍ ଉନ୍ନିସା ବା ନୂରଜାହାନ ପ୍ରକୃତରେ ବିଦ୍ୟା-ବୁଦ୍ଧିପ୍ରତିଭା ସୌରଭରେ ପରିପୂର୍ଣ୍ଣା ଥିଲେ । ଗରିବ ଘରର ଝିଅ ହେଲେ ମଧ୍ୟ ତାହାଙ୍କ ମାନସିକ ଉତ୍କର୍ଷ, ସୌନ୍ଦର୍ଯ୍ୟାନୁଭୂତି ଉଚ୍ଚ ଧରଣର ଥିଲା । ଜାହାଙ୍ଗୀର୍ ଏହି ରମଣୀଙ୍କ ରୂପ, ରସ, ଲାଭ କଲେ ଯେତେ, ମାତ୍ର ଏହାର ବିନିମୟରେ ସେ ତାଙ୍କ ଶାସନଦଣ୍ଡ ନୂରଜାହାନଙ୍କ ହାତକୁହିଁ ବଢାଇ ଦେଇଥିଲେ । ଟିକିଏ ମଦ ଓ କିଛି ମାଂସରେ ଜାହାଙ୍ଗୀର ସନ୍ତୁଷ୍ଟ ହୋଇ ରହିଲେ । ତେଣୁ ନୂରଜାହାନ କେବଳ ରୂପବତୀ ନାରୀ ନ ଥିଲେ, ସେ ଥିଲେ ଏକାଧାରରେ ସାମ୍ରାଜ୍ଞୀ ଓ ବିଶାଳ ମୋଗଲ ସାମ୍ରାଜ୍ୟର ପରିଚାଳିକା । ପ୍ରଜାବର୍ଗ ମଧ୍ୟ ଏହାଙ୍କୁ ବଡ଼ ସମ୍ମାନ ଚକ୍ଷୁରେ ଦେଖୁଥିଲେ । ନୂରଜାହାନ ଅନାଥ ବାଳିକା-ମାନଙ୍କୁ ଅକୁଣ୍ଠିତଚିତ୍ତରେ ସାହାଯ୍ୟ ଦାନ କରୁଥିଲେ । ସେ ନିଜେ ପ୍ରାୟ ପାଞ୍ଚଶ ଅନାଥା ବାଳିକାଙ୍କ ବିବାହ ସମ୍ପନ୍ନ କରାଇଥିଲେ ।

ନୂରଜାହାନ ବିଦୁଷୀ ଏବଂ ସୁନ୍ଦରୀ ଥିଲେ । ଏହାଙ୍କର ସୌନ୍ଦର୍ଯ୍ୟ-ବୋଧ ସଙ୍ଗେ କଳାକୁଶଳତା ଏବଂ ଉଦ୍ଭାବନା ଶକ୍ତି ମଧୁର ସମନ୍ୱୟ ଲାଭ କରିଥିଲା । ଗୃହକଳାରେ ନୂରଜାହାନଙ୍କର ବିଶେଷ ପାରଦର୍ଶିତା ଥିଲା । "ଅତର-ଇ-ଜାହାଙ୍ଗୀର" ଏହାଙ୍କ ଉଦ୍ଭାବିତ ଗୋଲାପ ସାର । ଏହା ବ୍ୟତୀତ 'ପେଶୋୟାଜ ଦୁଦାମୀ [Gown weighing 2 Dams (୪୦ ଦମ୍ବ ଦାମ =୫୧୧ଙ୍କା)], 'ବଦଲ୍' (Brocade), 'କିନାରୀ' ('Lace') 'ଫରାଷ-ଇ-ଚନ୍ଦନ' ଚନ୍ଦନ ରଙ୍ଗ ବର୍ଣ୍ଣ ବିଶିଷ୍ଟ କାର୍ପେଟ ନୂରଜାହାନଙ୍କ କଳ୍ପନାପ୍ରସୂତ । ଏହା ବ୍ୟତୀତ ନାନା ପ୍ରକାରର ଅଭିନବ ବିଚିତ୍ର ସ୍ୱର୍ଣ୍ଣାଳଙ୍କାର ଏବଂ ନାରୀ-ପରିଚ୍ଛଦ ପ୍ରଚଳନ କରି ନୂରଜାହାନ ତାହାଙ୍କ ବହୁମୁଖୀ ପ୍ରତିଭାର ପରିଚୟ ଦେଇଥିଲେ । ଏକ ପ୍ରକାର ନାଗ୍ରୀଲ (Skirt), ଏବଂ ଅଙ୍ଗୀ

(Bodice), ତାହାଙ୍କ ଦ୍ୱାରା ପ୍ରଚଳିତ ହୋଇଥିଲା । ସେ ମଧ୍ୟ ମୁସଲମାନୀ ଓଢ଼ଣା ବ୍ୟବହାରର ପଥ ପ୍ରଦର୍ଶିକା ଥିଲେ ।

ନୂରଜାହାନ କେବଳ ଅଙ୍ଗ ଅଳଙ୍କରଣ ନୁହେଁ, ରନ୍ଧନ ପ୍ରଣାଳୀରେ ମଧ୍ୟ ବହୁ ନୈପୁଣ୍ୟ ଲାଭ କରିଥିଲେ । ଜାହାଙ୍ଗୀରଙ୍କ ତୃପ୍ତି ବିଧାନ ପାଇଁ ସେ ପ୍ରତ୍ୟହ ନୂଆ ନୂଆ, ଆହାର ସାମଗ୍ରୀ ରନ୍ଧନ କରୁଥିଲେ । ଏହା ବ୍ୟତୀତ ସେ 'ଦସ୍ତରଖାନ' (ଭୋଜନାଧାର) ସଜ୍ଜିତ କରିବାର ଅଭିନବ ପ୍ରଣାଳୀ ଉଦ୍ଭାବନ କରିଥିଲେ । ଭୋଜନ ଦ୍ରବ୍ୟ ଗୁଡ଼ିକୁ କୁସୁମାକାରରେ ପ୍ରସ୍ତୁତ କରି ନୂରଜାହାନ ତାହାଙ୍କ କଳା-ସୃଜନ ଦକ୍ଷତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଥିଲେ । ଏହି ପ୍ରଣାଳୀ ପରେ କାଦିରସାହାଙ୍କୁ ବିସ୍ମୟାନନ୍ଦରେ ମଗ୍ନ କରାଇ ଥିଲା । ମୋଗଲ ବନିତାମାନଙ୍କ ମଧ୍ୟରେ ନୂରଜାହାନ ଯେପରି ସୌନ୍ଦର୍ଯ୍ୟର ପ୍ରତୀକ ଥିଲେ, ସେହିପରି ତାହାଙ୍କ ସୌନ୍ଦର୍ଯ୍ୟାନୁଭୂତି ତାହାଙ୍କ ନିର୍ମିତ ଉଦ୍ୟାନ, ପ୍ରାସାଦ, ହର୍ମ୍ୟରେ ମଧ୍ୟ ପରିସ୍ଫୁଟ ହୋଇ ପଡ଼ିଥିଲା । ପଥିକମାନଙ୍କ ପାଇଁ ସେ ସୁନ୍ଦର 'ନୂରସରାଇ' ନିର୍ମାଣ କରାଇ-ଥିଲେ । ଲାହୋରର 'ଶାଲିମାରବାଗ୍' ଓ କାଶ୍ମୀର ଝେଲମ ନଦୀ ତୀରରେ ଅବସ୍ଥିତ 'ନୂର-ଅଫଶାନ୍' ତାହାଙ୍କର ପ୍ରସିଦ୍ଧ ଉଦ୍ୟାନ ଥିଲା ।

ନୂରଜାହାନ ମଧ୍ୟ କବିତା ଏବଂ ସଙ୍ଗୀତର ପୂଜାରିଣୀ ଥିଲେ । ଏହାଙ୍କ ସୁଲଳିତ କଣ୍ଠ ନିସୃତ ଗୀତ-ସୁଧା ଶ୍ରୋତୃବର୍ଗଙ୍କୁ ଶୋକପାନ୍ଥଣୀର ସଙ୍ଗୀତ ପୁରୀକୁ ନେଇ ଯାଉଥିଲା । ସେ ଆରବ୍ୟ-ପାରସ୍ୟ ସାହିତ୍ୟରେ ପାରଦର୍ଶିନୀ ଥିଲେ । 'ମଖଫୀ' ଛଦ୍ମନାମ ଦେଇ ପାର୍ଶୀ ଭାଷାରେ ନୂରଜାହାନ ବହୁତ କବିତା ରଚନା କରିଥିଲେ । ଏଥିପାଇଁ ଜାହାଙ୍ଗୀର ତାହାଙ୍କୁ ବେଶୀ ସୁଖ ପାଉଥିଲେ । ତାହାଙ୍କ ସମାଧିରେ ଲିଖିତ କବିତା ପଂକ୍ତି ଦୁଇଟି ତାଙ୍କର ସ୍ୱ ରଚିତ ବୋଲି ଅନୁମାନ କରାଯାଏ,

"ବର ମଜାରେ ମା ଗରୀବାଁ
ନା ଚରାଗେ ନା ଗୁଲେ
ନା ପରେ ପର୍‌ଓ୍ୱାନେ
ସୋଜେଦ୍ ନା ସଦାୟେ ବୁଲ ବୁଲେ ।"

ଅର୍ଥାତ୍

ଦୁଃଖୀ ମୁହିଁ ପତଙ୍ଗର ପକ୍ଷ-ଦହନରେ
ଜାଳନା ଅଲୋକ ମମ ସମାଧି-ଅଗାରେ,
ଶୁଣିବାକୁ ବୁଲ୍‌ବୁଲ୍ ଅତୁଲ ସଙ୍ଗୀତ,
କରନା କବର ମୋର କୁସୁମ ଭୂଷିତ ।

## ମମତାଜ ମହଲ—

ତାଜମହଲ ଭଳି ଅପରୂପ ସୁନ୍ଦର ସମାଧି ମନ୍ଦିର ଯାହାଙ୍କ ପାଇଁ ଗଢ଼ା ଯାଇଥିଲା, ସେହି ପ୍ରସିଦ୍ଧ ମୋଗଲ ନାରୀ ମମତାଜ ମହଲ ମଧ୍ୟ ଜଣେ ବିଦୁଷୀ କଳା-କୁଶଳା, ପ୍ରେମଶୀଳା ନାରୀ-ରତ୍ନ ଥିଲେ । ତାଜମହଲର ଅଧିଷ୍ଠାତ୍ରୀ ଦେବୀ—ଶାହାଜାହାଁଙ୍କ (ଶାହାଜାହାନ) ପ୍ରିୟପତ୍ନୀ ମମତାଜ ଯେପରି ପତି-ପରାୟଣା, ସେପରି ଉଦାର ଏବଂ ବଦାନ୍ୟତାର ପ୍ରତୀକ ଥିଲେ । ମମତାଜ ଅପତ୍ୟ ସ୍ନେହ, ପ୍ରେମାନୁରାଗ, ଅଶିତ ବାତ୍ସଲ୍ୟର ଉତ୍ସ ସ୍ୱରୂପ ଥିଲେ । ଏ ମଧ୍ୟ ଫାର୍ସୀ ଭାଷାରେ କବିତା ରଚନା ଏବଂ ପାରସ୍ୟ ସାହିତ୍ୟର ବିଶେଷ ଆଲୋଚନା କରୁଥିଲେ । ଏହାଙ୍କ ପ୍ରତି ସମ୍ରାଟ ଶାହାଜାହାଁଙ୍କର ଏତେ ବିଶ୍ୱାସ ଥିଲା ଯେ ସମ୍ରାଟଙ୍କ ରାଜ-ମୋହର ଏହାଙ୍କ ନିକଟରେ ଗଚ୍ଛିତ ରହୁଥିଲା । ତେଣୁ ସମ୍ରାଟ ନାମାଙ୍କିତ ମୋହର ବ୍ୟବହାର କଲାବେଳେ ସେ ରାଜକୀୟ ନାନା ସନନ୍ଦ ଦଲିଲ ଦସ୍ତାବିଜର ସଂପର୍କରେ ଆସୁଥିଲେ । ତେଣୁ ତତ୍କାଳୀନ ରାଜନୀତି ସହିତ ମଧ୍ୟ ସେ ଅଳ୍ପ ବହୁତ ସଂପର୍କ ରଖୁଥିଲେ ବୋଲି ଅନୁମାନ । ତାଜମହଲ ଭଳି ବିରାଟ ସ୍ମୃତି-ସୌଧ ଯାହାଙ୍କ ଲାଗି ଗଢ଼ା, ସେହି ମମତାଜଙ୍କ ଜୀବନ ଚରିତ ଅତି ସଂକ୍ଷିପ୍ତ ଭାବରେ ମାତ୍ର ଐତିହାସିକମାନେ ସଂଗ୍ରହ କରି ପାରିଛନ୍ତି । ଯେଉଁ ବ୍ୟକ୍ତି ଯେତେ ମହାନ ସେ କ'ଣ ସେତେ ମୌନ ? ମମତାଜ ଖ୍ରୀଃ ଅଃ ୧୬୨୮ ଫେବୃୟାରୀ ୮ ତାରିଖରେ ପ୍ରାଣତ୍ୟାଗ କରିଥିଲେ ।

## ଜାହାନ ଆରା—

ଜାହାନ-ଆରା ମମତାଜ ମହଲ ଓ ଶାହଜାହାଁଙ୍କର ଦ୍ୱିତୀୟ କନ୍ୟା । ସତୀ ଉନ୍ନିସା ଏହାଙ୍କର ବାଲ୍ୟ ଶିକ୍ଷାଦାତ୍ରୀ ଥିଲେ । ସେ ଯୁଗରେ ଜାହାନ-ଆରା ରୂପ ଓ ଗୁଣରେ ପ୍ରସିଦ୍ଧି ଲାଭ କରିଥିଲେ । ଏହାଙ୍କର ହସ୍ତାକ୍ଷର ଅତି ସୁନ୍ଦର ଥିଲା । ଧର୍ମ ଗ୍ରନ୍ଥ ଆଲୋଚନା ଏହାଙ୍କର ଅତି ପ୍ରିୟ ବସ୍ତୁ ହୋଇଥିଲା । ବିଶେଷତଃ ସେ ସୁଫିବାଦ ପ୍ରତି ବିଶେଷ ଅନୁରକ୍ତ ହୋଇଥିଲେ । କୋରାନରେ ମଧ୍ୟ ତାହାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ଇହାଁନ୍-ଆରା କେତେଖଣ୍ଡି ଧର୍ମ ଗ୍ରନ୍ଥ ରଚନା କରିଥିଲେ । ତାହା ମଧ୍ୟରେ "ମୁନସ୍-ଉଲ୍-ଅରୱାହ୍" ବୋଲି ଖଣ୍ଡିଏ ଗ୍ରନ୍ଥ ଦେଖିବାକୁ ମିଳେ । ଏଥିରେ ଆଜମୀରର ସୁପ୍ରସିଦ୍ଧ ସାଧୁ ମୁଇନ୍-ଉଦ୍ଦୀନ୍-ଚିଶ୍ତୀ ଓ ତାହାଙ୍କର କେତେ ଜଣ ଶିଷ୍ୟଙ୍କ ଜୀବନ-କାହାଣୀ ଲିପିବଦ୍ଧ ହୋଇଅଛି । କିନ୍ତୁ ଏହି ବହି ଖଣ୍ଡି

ଜହାଁନ୍ ଅରାଙ୍କର ମୌଳିକ ରଚନା ନୁହେଁ । ତଥାପି ଏହି ଗ୍ରନ୍ଥର ରଚନା ଭଙ୍ଗୀରେ ତାଙ୍କର ପ୍ରାଞ୍ଜଳ ଲେଖାଶୈଳୀ ଓ ଗାମ୍ଭୀର୍ଯ୍ୟ ସ୍ପଷ୍ଟ ହେ ।

ମମତାଜଙ୍କ ମୃତ୍ୟୁ ପରେ ଜାହାଁନ୍-ଆରାଙ୍କୁ ରାଜପ୍ରାସାଦରେ ବହୁ ଗୁରୁ-ଭାର ବହନ କରିବାକୁ ପଡ଼ିଥିଲା । ମାତ୍ର ସେହି ସମୟରେ ଏହାଙ୍କ ବୟସ ମାତ୍ର ପନ୍ଦର ବର୍ଷ । 'ବେଗମ ସାହେବ' ଶିରୋନାମାରେ ଏହାଙ୍କ ଡାକ ନାମ ସେତେବେଳେ 'ବାଦଶାହ ଜାଦୀ' । ସେ ଶାହଜହାଁଙ୍କ ଅଧିକ ସ୍ନେହ ଦର-ବାରରେ ମୋଗଲ ଶିଷ୍ଟାଚାର ଅନୁସାରେ ସମ୍ରାଟଙ୍କୁ ବହୁ ମଣିମୁକ୍ତା ଏବଂ 'ନଜର' ଦେଇଥିଲେ । ତାହା ବଦଳରେ ସମ୍ରାଟ ତାହାଙ୍କୁ 'ପାଦଶାହ ବେଗମ' ଉପାଧିରେ ଭୂଷିତ କରିଥିଲେ । ପିତାଙ୍କଠାରୁ ମଧ୍ୟ ଜହାନ୍-ଆରା ତାହାଙ୍କ ଜୀବନରେ ଲକ୍ଷ ଲକ୍ଷ ମୁଦ୍ରା ଉପହାର ପାଇଥିଲେ ।

ଏହାଙ୍କ ନାମକରଣ ସମ୍ବନ୍ଧରେ ମଧ୍ୟ ଗୋଟିଏ ସୁନ୍ଦର କିମ୍ବଦନ୍ତୀ ପ୍ରଚଳିତ ଅଛି । ଖ୍ରୀ: ଅ. ୧୬୧୪ ମାର୍ଚ୍ଚ ୨୨ ତାରିଖରେ ଯେତେବେଳେ ଆଜମିରଠାରେ ଜହାଁନ-ଆରା ଜନ୍ମ ହୋଇଥିଲେ; ସେତେବେଳେ ଶାହଜହାଁ ଉଦୟପୁର ରାଣା ଅମର ସିଂହଙ୍କ ସହ ଯୁଦ୍ଧରେ ବ୍ୟାପୃତ ଥିଲେ । ଜହାଁନ-ଆରା ଜନ୍ମ ପରେ ଶାହଜହାଁ ଏହି ଯୁଦ୍ଧରେ ଜୟୀ ହେବାରୁ ଜହାନ ଆରାଙ୍କ ଜନ୍ମ ଶୁଭପ୍ରଦ ବୋଲି ମୋଗଲ-ପ୍ରାସାଦରେ ଗୃହୀତ ହୋଇଥିଲା । ଯେଉଁ ଶିଶୁର ଜନ୍ମରେ ରାଜପରିବାରରେ ଶୁଭ ସମ୍ଭବପର ହେଲା, ତାହାଙ୍କ ଉପରେ ପରିବାରର ବିଶେଷ ଆଦର ଓ ସ୍ନେହ ଚାଲି ଯାଇଥିଲା । ସମ୍ରାଟ ଜାହାଙ୍ଗୀର ଶିଶୁର ଅଲୌକିକସାମାନ୍ୟ ରୂପ ଦେଖି ନାମ ରଖିଥିଲେ ଜହାଁନ-ଆରା (ଜଗତର ଅଳଙ୍କାର), କିନ୍ତୁ ମୋଗଲ ରାଜ ଅନ୍ତଃପୁରର ପ୍ରଥାନୁସାରେ ତାହାଙ୍କୁ ବେଗମ ସାହିବା ବୋଲି ସମ୍ବୋଧନ କରି ଯାଉଥିଲା ।

କିନ୍ତୁ ଜହାଁନ-ଆରା ଜୀବନସାରା ଚିରକୁମାରୀ ହୋଇ ରହିବାକୁ ବାଧ୍ୟ ହୋଇଥିଲେ । ଥରେ ମିର୍ଜା ଶାହାରୁଖଙ୍କ ତୃତୀୟ ପୁତ୍ର ନଜାବତ ଖାଁ ଜହାଁନ ଆରାଙ୍କର ପ୍ରଣୟପ୍ରାର୍ଥୀ ହୋଇଥିଲେ । କିନ୍ତୁ କେତେକ ରାଜନୀତିକ କାରଣ ଯୋଗୁଁ ଏ ବିବାହ ହୋଇ ପାରିଲା ନାହିଁ ।

ଜହାଁନ୍-ଆରା ମମତାଜଙ୍କ ମୃତ୍ୟୁପରେ ସମ୍ରାଟଙ୍କ ପ୍ରାସାଦରେ 'ପ୍ରଧାନ ମହିଳା' ହୋଇଥିଲାବେଳେ ଦାରା ଓ ସୁଜା ଦୁଇ ରାଜପୁତ୍ରଙ୍କ ବିବାହ ସମ୍ପନ୍ନ ହୋଇଥିଲା । କେବଳ ଦାରାଙ୍କ ବିଭାଘରରେ ଜହାନ୍ଆରା ଷୋଳଲକ୍ଷ ଟଙ୍କା ନିଜ ହାତରୁ ଖର୍ଚ୍ଚ କରିଥିଲେ । ସେ ନିଜ ଭାଇମାନଙ୍କୁ ଅତି ଆଦର ଓ ସ୍ନେହ କରୁଥିଲେ । ଦାରାଙ୍କ ରୋଗ ଶଯ୍ୟାରେ ସେ ବିଶ୍ରସ୍ତ

ସେବକାର କାର୍ଯ୍ୟ କରିଥିଲେ । ପୁଣି ଔରଙ୍ଗଜେବ ଓ ଶାହଜହାଁଙ୍କ ମଧ୍ୟରେ ପ୍ରଥମ ମନୋମାଳିନ୍ୟ ହେଲାବେଳେ ଜହାଁନ୍-ଆରା ମଧ୍ୟସ୍ଥତା କରି ପିତାପୁତ୍ରଙ୍କ ମଧ୍ୟରେ ଏକ ସମାଧାନ ଆଣିଥିଲେ । ଖ୍ରୀ: ଅ: ୧୬୩୨ ପରେ ସମ୍ରାଟଙ୍କ ରାଜମୋହର ମଧ୍ୟ ଜହାଁନ୍-ଆରାଙ୍କ ହାତରେ ପଡ଼ିଥିଲା । ତେଣୁ ସାମ୍ରାଜ୍ୟର ଦଲିଲ ଦସ୍ତାବିଜ ସମ୍ବନ୍ଧରେ ତାଙ୍କର ମଧ୍ୟ ମମତାଜଙ୍କ ଭଳି ପ୍ରତ୍ୟକ୍ଷ ଜ୍ଞାନ ମିଳିଥିଲା । ସମ୍ରାଟ ଶାହଜହାଁଙ୍କ ରାଜତ୍ୱ ସମୟରେ ସେ ସତେଇଶ ବର୍ଷ କାଳ ତାଙ୍କ ପ୍ରାସାଦରେ 'ପ୍ରଧାନ ମହିଳା' କାର୍ଯ୍ୟ ତୁଲାଇ ଥିଲେ ।

ଜହାଁନ୍-ଆରାଙ୍କୁ ଯେତେବେଳେ ତିରିଶ ବର୍ଷ ବୟସ ଅର୍ଥାତ୍ ଖ୍ରୀ: ଅ: ୧୬୪୪ ମାର୍ଚ୍ଚ ୨୨ ତାରିଖରେ ସେ ଏକ ଆକସ୍ମିକ ଦୁର୍ଘଟଣା ଯୋଗୁଁ ପୋଡ଼ି ଯାଇଥିଲେ । ସେଦିନ ରାତିରେ ସେ ଆଗ୍ରାରେ ତାଙ୍କ ପିତାଙ୍କ ମହଲରୁ ଆସୁ ଆସୁ ଅନ୍ତଃପୁର ପାଚେରୀରେ ଥିବା ଗୋଟିଏ ଦୀପରୁ ତାହାଙ୍କ ଶାଢ଼ୀରେ ନିଆଁ ଲାଗି ଯାଇଥିଲା । ଏଥିରେ ପ୍ରାୟ ମମତାଜ ଅର୍ଦ୍ଧଦଗ୍ଧ ହୋଇ ଯାଇଥିଲେ । ଦୀର୍ଘ ଚାରି ମାସ ପରେ ସେ ଆରୋଗ୍ୟ ଲାଭ କରିଥିଲେ । କିନ୍ତୁ ସମ୍ପୂର୍ଣ୍ଣ ଭାବରେ ଆରୋଗ୍ୟ ଲାଭ କରିବାକୁ ତାହାଙ୍କୁ ପ୍ରାୟ ନଅ ମାସ ଲାଗିଯାଇଥିଲା !

ରାଜ ଅନ୍ତଃପୁର ବ୍ୟତୀତ ଅନ୍ୟାନ୍ୟ ବହୁ ସାଧାରଣ ରାଜନୀତିକ କାର୍ଯ୍ୟରେ ମଧ୍ୟ ଜହାଁନ୍-ଆରା ନାନା ଭାବରେ ସଂଶ୍ଳିଷ୍ଟ ଥିଲେ । ଯେତେବେଳେ ସମ୍ରାଟ ଶାହଜାହାଁଙ୍କ ଚାରି ପୁତ୍ରଙ୍କ ମଧ୍ୟରେ ସିଂହାସନ ଲାଗି ଅନ୍ତର୍ବିବାଦ ଲାଗିଥିଲା; ସେତେବେଳେ ମଧ୍ୟ ଜହାଁନ-ଆରା ତାହାଙ୍କ ପାରସ୍ପରିକ ଶାନ୍ତି ଆଣିବାକୁ ଚେଷ୍ଟା କରିଥିଲେ । ସେ ସମୟରେ ସେ ଔରଙ୍ଗଜେବଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ । ଚିଠିର କେତେକାଂଶ ଏହି:—

"ଏହି ସମୟରେ କେଉଁ ରାଜ୍ୟରେ କୌଣସି ପ୍ରକାର ଅଶାନ୍ତି ସୃଷ୍ଟି କରୁ, ଏହା ସମ୍ରାଟଙ୍କର ଅଭିପ୍ରାୟ ନୁହେଁ । କାରଣ ତାହାଙ୍କ ଅସୁସ୍ଥତା ଯୋଗୁଁ ରାଜ୍ୟଶାସନ କାର୍ଯ୍ୟରେ ଯେଉଁ ଶିଥିଳତା ଓ ଅବ୍ୟବସ୍ଥା ଘଟିଥିଲା ତାହା ଦୂର କରିବାପାଇଁ ସେ ନିଜେ ଚେଷ୍ଟା କରୁଅଛନ୍ତି ।

ତୁମ୍ଭର ଏହି ଅଭିଯାନ ଦ୍ୱାରା ଯଦି ସମରାନଳ ପ୍ରଜ୍ଜ୍ୱଳିତ କରିବା ମନୋଗତ ଅଭିପ୍ରାୟ ଥାଏ, ତାହାହେଲେ ତୁମ୍ଭର ବିବେଚନା କରି ଦେଖିବା ଉଚିତ ଯେ ପିତାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ପରିଣାମରେ ଅଖ୍ୟାତି

ଅର୍ଜ୍ଜନ ବ୍ୟତୀତ ଅନ୍ୟ କୌଣସି ଫଳ ଲାଭ ହେବ ନାହିଁ । ଅନ୍ୟ ଦାରାଙ୍କ ପ୍ରତି ବୈରିତା ସାଧନ କରିବା ଯଦି ତୁମ୍ଭର ଉଦ୍ଦେଶ୍ୟ ହୋଇଥାଏ ତାହାହେଲେ ଏହା ନ୍ୟାୟଧର୍ମ୍ମାନୁମୋଦନ ହେବ ନାହିଁ; କାରଣ ଜ୍ୟେଷ୍ଠଭ୍ରାତା ମୁସଲମାନ ଧର୍ମ-ବିଧି ଓ ପ୍ରଚଳିତ ରୀତିନୀତି ଅନୁସାରେ ସର୍ବଦା ପିତୃସ୍ଥାନୀୟ । ତେଣୁ ତୁମ୍ଭର ଜ୍ୟେଷ୍ଠ ଭ୍ରାତା ବିରୁଦ୍ଧରେ ଅସ୍ତ୍ରଧାରଣ କେହି ସମର୍ଥନ କରିବେ ନାହିଁ । ଆମ୍ଭେମାନେ ଏହି ନଶ୍ୱର ଜଗତକୁ ଅତି ଅଳ୍ପ ଦିନ ସକାଶେ ଆସିଅଛୁଁ । ପାର୍ଥିବ ଭୂମିର ଅନଦବଣି ଆସ୍ଥମାନଙ୍କୁ ନାନା ଅନ୍ୟାନ୍ୟ କାର୍ଯ୍ୟରେ ପ୍ରଲୁବ୍ଧ କରି ଅନନ୍ତ ଦୁଃଖ ସୃଷ୍ଟି କରେ । ତେଣୁ ତୁମ୍ଭର ଏହି କାର୍ଯ୍ୟରୁ ବିରତ ହେବା ଉଚିତ । ସାଧ୍ୟାନୁସାରେ ସମ୍ରାଟଙ୍କୁ ପରିତୁଷ୍ଟ କରିବାକୁ ଚେଷ୍ଟା କର । କାରଣ ଏହାହିଁ ଇହ ଓ ପର ଜଗତରେ ଭୂମାନନ୍ଦ ଲାଭର ଏକମାତ୍ର ଉପାୟ । ସମ୍ରାଟଙ୍କୁ ଭଗବାନଙ୍କ ଭଳି ଭକ୍ତି ଓ ଶ୍ରଦ୍ଧା ଚକ୍ଷୁରେ ଦେଖିବ ।”

ଉଲ୍ଲିଖିତ ପତ୍ରାଂଶରୁ ଜହାଁନ୍‌ଆରାଙ୍କ ବ୍ୟକ୍ତିତ୍ୱ ସହଜରେ ପରିସ୍ଫୁଟ । ଜହାଁନ୍‌ଆରା କେବଳ ବିଚକ୍ଷଣ ଓ ବିଜ୍ଞ ନ ଥିଲେ; ଅଧିକନ୍ତୁ ମଧ୍ୟ ପ୍ରମାଣ ମିଳେ ଯେ ସେ ନାନା ରାଜକାର୍ଯ୍ୟରେ ମଧ୍ୟ ଯୋଗ ଦେଉଥିଲେ । ବହୁ ରାଜପୁତ୍ର ଓ ରାଜା ଜହାଁନ୍‌ଆରାଙ୍କ ସାହାଯ୍ୟ ଓ ଆଶ୍ରୟ ଲାଭ କରି ଦିଲ୍ଲୀ ଦରବାରରୁ ଉପକାର ଲାଭ କରୁଥିଲେ ପୁଣି ଯେତେବେଳେ ଆଉରଙ୍ଗଜେବ ନିଜ ପିତା ସମ୍ରାଟ ଶାହଜହାଁଙ୍କୁ ବନ୍ଦୀ କରିଥିଲେ, ଏବଂ ବନ୍ଦୀ ଅବସ୍ଥାରେ ପାଣି ମୁନ୍ଦାଏ ପାଇଁ ଶାହଜହାଁ ଆଉରଙ୍ଗଜେବଙ୍କୁ ଆବେଦନ ମଧ୍ୟ ପଠାଉଥିଲେ, ସେତେବେଳେ ମଧ୍ୟ ଜହାଁନ୍-ଆରା ସାହସ ଅବଲମ୍ବନ କରି ଆଉରଙ୍ଗଜେବଙ୍କ ଶିବିରକୁ ଶାନ୍ତି-ଦୂତୀ ହୋଇ ଯାଇଥିଲେ । ଆଉରଙ୍ଗଜେବ ଜ୍ୟେଷ୍ଠା ଭଗ୍ନୀଙ୍କୁ ଅସମ୍ମାନ ଦେଖାଇଥିଲେ ମଧ୍ୟ, ସେ ତାହା ପ୍ରତି ଭ୍ରୂକ୍ଷେପ ନ କରି ପିତା-ପୁତ୍ରଙ୍କ ମନୋମାଳିନ୍ୟ ଦୂର କରିବାକୁ ଚେଷ୍ଟା କରିଥିଲେ । ଆଉରଙ୍ଗଜେବ ଜହାଁନ୍-ଆରାଙ୍କ ଅନୁରୋଧରେ ବୃଦ୍ଧ ପିତାଙ୍କ ସହିତ ସାକ୍ଷାତ କରିବାକୁ ମଧ୍ୟ ରାଜି ହୋଇଥିଲେ । କିନ୍ତୁ ଅନ୍ୟାନ୍ୟ ପାର୍ଶ୍ୱ ଲୋକଙ୍କ ଅଭିସନ୍ଧି ଯୋଗୁଁ, ଏହି ଶାନ୍ତି ପ୍ରଚେଷ୍ଟା ଫଳବତୀ ହେଲା ନାହିଁ ।

ଜହାଁନ୍-ଆରା ଉଦାର-ହୃଦୟା ଓ ଦାନଶୀଳା ନାରୀ ଥିଲେ । ସେ ମସଜିଦ ଓ ଧର୍ମୀୟ ହିତ ପାଇଁ ବହୁ ସୁନ୍ଦର ଅଟ୍ଟାଳିକା ନିର୍ମାଣ କରାଇଥିଲେ । ଏଥିପାଇଁ ସେ ଅକାତରରେ ବହୁ ଅର୍ଥ ମଧ୍ୟ ଦାନ କରିଥିଲେ । ଶାହଜହାଁ ଯେପରି ସୁନ୍ଦର ସ୍ଥାପତ୍ୟ-କଳାର ପୃଷ୍ଠପୋଷକ ଥିଲେ, ଜହାଁନ୍-ଆରା ମଧ୍ୟ

ଷୈହ୍ରଙ୍କ କଳାନୁରାଗିତା ଥିଲେ । ଖ୍ରୀଃ ଅଃ ୧୬୪୭ ମସିହାରେ ଆଗ୍ରାର ସୁପ୍ରସିଦ୍ଧ 'ଜାମୀମସଜିଦ,' ଏହାଙ୍କର ବ୍ୟୟରେ ନିର୍ମିତ ହୋଇଥିଲା । 'ବେଗମ ସରାଇ', ନାମକ ଏକ ବଡ଼ ଧର୍ମଶାଳା ମଧ୍ୟ ଜହାଁନ୍-ଆରା ଦିଲ୍ଲୀରେ ନିର୍ମାଣ କରାଇଥିଲେ । ଦିଲ୍ଲୀ, ଆଗ୍ରା, ଅମ୍ବାଲା ଓ କାଶ୍ମୀରରେ ଜହାଁନ-ଆରା ବହୁ ସୁନ୍ଦର ସୁନ୍ଦର ଉଦ୍ୟାନ ପ୍ରତିଷ୍ଠା କରିଥିଲେ । କାଶ୍ମୀରର "ଅଚବଲ", ଦିଲ୍ଲୀର 'ବେଗମ ବାଗ" (Queen's garden) ଏହାଙ୍କର ଅକ୍ଷୟ କୀର୍ତ୍ତି । ଏହି ଉଦ୍ୟାନ ଦୁଇଟିର ଶ୍ୱେତ ମର୍ମ୍ମର ନିର୍ମିତ ମୂର୍ତ୍ତି, ପ୍ରମୋଦ ଭବନ, ଜଳ ପ୍ରଣାଳୀ ଓ ଉତ୍ସ ସକଳ ଅତି ସୁନ୍ଦର ଓ ମନୋମୁଗ୍ଧକର । ଆଗ୍ରା ଦୁର୍ଗସ୍ଥିତ ଜହାଁନ-ଆରାଙ୍କ ରମଣୀୟ କକ୍ଷ ସକଳ ଦେଖିଲେ ଏହି ନାରୀଙ୍କ ସୌନ୍ଦର୍ଯ୍ୟା-ନୁଭୂତିର ବିଶେଷ ପରିଚୟ ଓ ପ୍ରମାଣ ମିଳେ ।

ଜହାଁନ-ଆରାଙ୍କ ଜୀବନର ଅନ୍ୟ ଏକ ଦିଗ ଆମ୍ଭେମାନେ ଦେଖୁ ତାହାଙ୍କ ବୃଦ୍ଧ ବନ୍ଦୀ ପିତା ଶାହଜହାଁଙ୍କ ସେବିକା ବେଶରେ । ଜହାଁନ-ଆରା ବୃଦ୍ଧ ପିତାଙ୍କ ପାଇଁ ଏହି ବନ୍ଧନ ସ୍ୱଇଚ୍ଛାରେ ବରଣ କରି ନେଇଥିଲେ । ବୃଦ୍ଧ ପିତାଙ୍କ ସେବା ଛାଡ଼ି ସେ ମୁକ୍ତ ଜୀବନକୁ ପସନ୍ଦ କରି ନ ଥିଲେ । କିନ୍ତୁ ତାଙ୍କର ଅନ୍ୟ ଏକ ଭଗିନୀ ରୌଷନାରା ମୁକ୍ତ ବିଳାସ-ଜୀବନ ଯାପନ କରିବାକୁ ସୁଖକର ମଣିଥିଲେ । ଆଉରଙ୍ଗଜେବ ଜହାଁନ-ଆରାଙ୍କୁ ବନ୍ଦୀ କରିବାକୁ ଇଚ୍ଛା କରୁ ନଥିଲେ । କିନ୍ତୁ ଜହାଁନଆରା ନିଜ ଇଚ୍ଛାରେ କେବଳ ବୃଦ୍ଧ ପିତାଙ୍କ ସେବା ପାଇଁ ବନ୍ଦିନୀ ହୋଇଥିଲେ । ସେ ଏହି ବନ୍ଧନ ଶାଳାରେ ଦୀର୍ଘ ସାତେ ସାତ ବର୍ଷ ରହିଥିଲେ । ୧୬୬୬ ଜାନୁୟାରୀରେ ଶାହଜହାଁଙ୍କର ପରଲୋକ ହୋଇଥିଲା । ପୁଣି ଶାହଜହାଁ ଆଗ୍ରା ଦୁର୍ଗରେ ମଲାପରେ ଆଉରଙ୍ଗଜେବ ଦିଲ୍ଲୀରେ । ଜହାଁନ-ଆରାଙ୍କ ଯଦିବା ଇଚ୍ଛା ଥିଲା ଯେ ପିତାଙ୍କ ଶବ ସମୁଚିତ ଆଡ଼ମ୍ବରରେ ଯିବ; ତଥାପି ଜହାଁନ୍-ଆରାଙ୍କ ଏହି ଇଚ୍ଛା ପୂର୍ଣ୍ଣ ହୋଇ ପାରିଲା ନାହିଁ । କାରଣ ଆଉରଙ୍ଗଜେବଙ୍କ ଅନୁପସ୍ଥିତିରେ ଏହା ହେବା ସମ୍ଭବପର ନ ଥିଲା । ତେଣୁ ଶାହଜହାଁଙ୍କ ଶେଷ ଅନ୍ତ୍ୟେଷ୍ଟି କ୍ରିୟା ଅତି ଦୀନ ଭାବରେ ଜହାଁନ୍-ଆରାଙ୍କ ଦ୍ୱାରାହିଁ ସମାହିତ ହୋଇଥିଲା—ଏବଂ ତାଜମହଲରେ ଏହାଙ୍କର ଶେଷ ସମାଧି ଦିଆ ଯାଇଥିଲା ।

ଏହା ପରେ କିପରି ସେ ମୃତ୍ୟୁ ସମ୍ବାଦ ଜଣାଇ ଆଉରଙ୍ଗଜେବଙ୍କୁ ଚିଠି ଲେଖିଥିଲେ ସେହି ପତ୍ର ଦେଖିଲେ ଜହାଁନ୍-ଆରାଙ୍କ ସ୍ନେହପ୍ରବଣ ହୃଦୟର ପୂର୍ଣ୍ଣ ପରିଚୟ ମିଳେ । ଶାହଜହାଁଙ୍କ ମୃତ୍ୟୁ ପରେ ସେ ପୁଣି

ଆଉରଙ୍ଗଜେବଙ୍କ ପ୍ରାସାଦର ପ୍ରଧାନ ମହିଳା ହୋଇଥିଲେ । ସେ ଆଉରଙ୍ଗଜେବଙ୍କଠାରୁ ବାର୍ଷିକ ୧୬-୧୭ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବୃତ୍ତି ପାଉଥିଲେ । ଜହାନ୍‌ଆରା ପ୍ରାୟ ଆହୁରି ପନ୍ଦର ବର୍ଷ ବଞ୍ଚି ୧୬୮୧ ସେପ୍‌ଟେମ୍ବର ୬ ତାରିଖରେ ୬୭ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ ।

ମୃତ୍ୟୁ ପରେ ଏହାଙ୍କ ସମ୍ପତ୍ତିର ପରିମାଣ ୧୮.୨,୩୦୮ ମୋହର ନଗଦ ଟ ୧୩୭୦,୨୬୬ ଙ୍କା ଥିଲା ଏବଂ ଏହା ବ୍ୟତୀତ ସେ ୧୦ ଲକ୍ଷ ଟଙ୍କା ଋଣ ଦେଇଥିଲେ । ଜହାନ୍-ଆରାଙ୍କ ସ୍ୱର୍ଣ୍ଣନିର୍ମିତ ପଲଙ୍କରେ ଲେଖା ହୋଇଥିଲା

ବେଗମ୍ ସାହିବା କା ପାଲଂ ଶୋନେ କା ।

ଦିଲ୍ଲୀରେ ରହିଲା ବେଳେ ଜହାଁନ୍-ଆରା ମଧ୍ୟ ଆଉରଙ୍ଗଜେବଙ୍କ ସହିତ ରାଜନୀତି ଚର୍ଚ୍ଚା କରୁଥିଲେ । ଯେତେବେଳେ ଆଉରଙ୍ଗଜେବ ଜିଜିୟା କର ହିନ୍ଦୁମାନଙ୍କ ଉପରେ ବସାଇବାକୁ ଚେଷ୍ଟା କରିଥିଲେ ସେତେ-ବେଳେ ଜହାଁନ୍-ଆରା ଏହାର ପ୍ରତିବାଦ କରିଥିଲେ । କିନ୍ତୁ ଆଉରଙ୍ଗଜେବ ଭଉଣୀଙ୍କ ସେହି ଅନୁରୋଧ ରକ୍ଷା କରି ନ ଥିଲେ ।

ଜହାନ୍-ଆରାଙ୍କ ଚରିତ୍ରର ସୁଗୁଣ ବିଷୟରେ ବହୁ ତଥ୍ୟ ବର୍ଣ୍ଣିତ ହେଲେ ମଧ୍ୟ ଫ୍ରାନ୍ସ ପରିବ୍ରାଜକ ଫ୍ରାଙ୍କୋୟିସ ବର୍ଣ୍ଣିୟର Francois Bernier ଏହାଙ୍କ ଚରିତ୍ର ଉପରେ କଳଙ୍କ ଆରୋପ କରିବାକୁ ଭୁଲି ନାହାନ୍ତି । ଏହି ପରିବ୍ରାଜକ ଖ୍ରୀଃ ଅଃ-୧୬୨୦ ରେ ଫ୍ରାନ୍ସରେ ଜନ୍ମଗ୍ରହଣ କରିଥିଲେ । ଏ ଜଣେ ଡାକ୍ତର । ୧୬୫୮ ରେ ସେ ଭାରତ ଅଭିମୁଖରେ ଆସିଥିଲେ । ସେ ଭାରତରେ ପହଞ୍ଚିଲା ବେଳକୁ ଶାହଜାହାଙ୍କ ପୁତ୍ର ପୁତ୍ରଙ୍କ ମଧ୍ୟରେ ସିଂହାସନ ଲାଗି କଳହ ସୂତ୍ରପାତ ହୋଇ ଯାଇଥିଲା । ଦାରା ଆଉରଙ୍ଗଜେବଙ୍କ ଦ୍ୱାରା ଦେଓରାଇ ସମରରେ ପରାସ୍ତ ହୋଇଥିଲେ । ବର୍ଣ୍ଣିୟର ଦାରାଙ୍କର ଏକ ପତ୍ନୀଙ୍କ ଚିକିତ୍ସା ଭାର ଗ୍ରହଣ କରିଥିଲେ । କିନ୍ତୁ ସେ ପଳାତକ ହେବାରୁ ବର୍ଣ୍ଣିୟର ୧୬୫୯ରେ ଆଗ୍ରା ଆସିଥିଲେ । ସେ ମୋଗଲ ରାଜ-ଦରବାରରେ ମଧ୍ୟ ଡାକ୍ତର ବୃତ୍ତି ପାଇଥିଲେ । ସେ ଏହିଠାରେ ରହିଲାବେଳେ ମୋଗଲ ରାଜ-ଅନ୍ତଃପୁର ବିଷୟରେ ନାନା ତଥ୍ୟ ସଂଗ୍ରହ କରିଥିବା ଅନୁମାନ । ୧୬୬୬ ଜାନୁଆରୀରେ ବର୍ଣ୍ଣିୟର ଭାରତରୁ ଫେରି ଯାଇଥିଲେ । ୧୬୬୮ ରେ ସେ ଫ୍ରାନ୍ସରେ ପହଞ୍ଚି ୧୬୬୯ ରେ ତାହାଙ୍କ ଭ୍ରମଣ-କାହାଣୀ ଲେଖିଥିଲେ । ଏହି ବିବରଣୀରୁ ସ୍ପଷ୍ଟ ଜଣାପଡ଼ିବ ଯେ ବର୍ଣ୍ଣିୟର ତିନି ବର୍ଷ ଭାରତରେ ରହିଥିଲେ ଏବଂ ତାହାଙ୍କ ବିବରଣୀ ଏକ ସ୍ୱାଧୀନ ଭ୍ରମଣକାରୀର ବିବରଣୀ । ଏଥିରେ ସମସାମୟିକ ରାଜପ୍ରଭାବ ଆଦୌ ନ ଥିଲା । ଜହାନ୍

ଅଷ୍ଟଙ୍କ ବିଷୟରେ ସେ ଏହି ଭ୍ରମଣକାହାଣୀରେ ନିମ୍ନଲିଖିତ ଭାବରେ ଲେଖି ଯାଇଥିଲେ । ଶାହଜହାଁ (chha-jehan)ଙ୍କ ଦୁଇ କନ୍ୟାଙ୍କ ସମ୍ପର୍କରେ ସେ ଲେଖିବାକୁ ଯାଇ ବର୍ଣ୍ଣନା କରିଛନ୍ତି ଯେ "ବଡ଼ଝିଅ ବେଗମ ସାହେବ ସୁନ୍ଦରୀ, ବୁଦ୍ଧିମତୀ ଏବଂ ପିତାଙ୍କର ଅତିମାତ୍ରାରେ ଶ୍ରଦ୍ଧାଭାଜନ କନ୍ୟା । ଅଧିକନ୍ତୁ ମଧ୍ୟ ଜନରବ ଶୁଣାଯାଏ ଯେ ଯାହା ସାଧାରଣ ମଣିଷ କଳ୍ପନା କରି ପାରିବେ ନାହିଁ—ଶାହଜହାଁ ସେପରି ଭାବରେ ତାହାଙ୍କୁ ସୁଖ ପାଉଥିଲେ । ଏବଂ ଏଥିପାଇଁ ସମ୍ରାଟ ଯୁକ୍ତି ମଧ୍ୟ ଦେଖାଉଥିଲେ ଯେ କୁଆଡ଼େ ମୁଲ୍ଲାମାନେ କହୁଥିଲେ ଯେ ମଣିଷ ଯେଉଁ ବୃକ୍ଷ ଲଗାଏ ତାର ଫଳ ଭୋଗ କରିପାରେ ।"

"ସେ (ଶାହଜହାଁ)ତାଙ୍କୁ ଏତେ ବିଶ୍ୱାସ କରୁଥିଲେ ଯେ ସମ୍ରାଟ ନିଜର ନିରାପତ୍ତା ପାଇଁ ନିଜର ଝିଅଙ୍କ ଉପରେ ସମସ୍ତ ଭାର ଅର୍ପଣ କରିଥିଲେ । ଜହାଁନ ଆରା ସମ୍ରାଟଙ୍କ ଖାଦ୍ୟ ପଦାର୍ଥ ସବୁ ନିଜେ ଦେଖୁଥିଲେ । ଜହାଁନ ଆରା ସମ୍ରାଟଙ୍କ ମିଜାଜ ଠିକ୍ ବୁଝିଥିଲେ ଏବଂ ଅତି ପ୍ରଧାନ ଘଟଣାରେ ମଧ୍ୟ ଜହାନ୍ ଆରାଙ୍କ ଇଚ୍ଛାନୁସାରେ ଶାହଜହାଁ ଧାବିତ ହେଉଥିଲେ । ସେ ଖୁବ୍ ଅତ୍ୟଧିକ ପେନସନ ଦ୍ୱାରା ଧନୀ ହୋଇଥିଲେ । ଏହା ବ୍ୟତୀତ ସେ ସାମ୍ରାଜ୍ୟର ସବୁଆଡ଼ୁ ନାନା ଉପଢୌକନ ପାଉଥିଲେ । କାରଣ ସେ ନାନା ଗୁରୁତ୍ୱପୂର୍ଣ୍ଣ ବିଷୟରେ ପିତାଙ୍କ ସଙ୍ଗେ ଆଲୋଚନା ଏବଂ ନୀତି ନିର୍ଦ୍ଧାରଣ ମଧ୍ୟ କରୁଥିଲେ । ସେ ଖୁବ୍ ଦାନଶୀଳ ଏବଂ ଦୟାର୍ଦ୍ର ଥିବାରୁ ଖୁବ୍ ଖର୍ଚ୍ଚ ମଧ୍ୟ କରୁଥିଲେ । ସେ ସବୁବେଳେ ଦାରାଙ୍କ ପକ୍ଷ ସମର୍ଥନ କରୁଥିଲେ । ସେଥିପାଇଁ ଦାରା ବେଗୀ ଶାହଜହାଁଙ୍କ ସ୍ନେହ-ଭାଜନ ହୋଇଥିଲେ ଏବଂ ତାଙ୍କର ଉନ୍ନତି ହୋଇଥିଲା । ଅଧିକନ୍ତୁ ମଧ୍ୟ ଲୋକେ କହୁଥିଲେ ଯେ ଦାରା ରାଜା ହେଲା ପରେ ଜହାଁନ ଆରାଙ୍କୁ ବିଭା ଦେବାପାଇଁ ସେ କୁଆଡ଼େ ସମ୍ମତ ହେଉଥିଲେ ।"

ଏହାପରେ ପୁଣି ବର୍ଣ୍ଣିୟର ଜହାନ୍ଆରାଙ୍କ ପ୍ରେମ ବୃତ୍ତାନ୍ତ ବର୍ଣ୍ଣନା କରିବାକୁ କୁଣ୍ଠିତ ହୋଇ ନାହାନ୍ତି । "ଅନ୍ୟ ନାରୀଙ୍କ ଭଳି ଅନ୍ଦର ମହଲରେ ରହୁଥିଲେ ମଧ୍ୟ ଏହି ରାଜକନ୍ୟାଙ୍କ କେତେକ ପ୍ରେମ ବୃତ୍ତାନ୍ତ ବର୍ଣ୍ଣନା କରିବାକୁ କୁଣ୍ଠିତ ହେବ ନାହିଁ । ଅଥଚ ମଧ୍ୟ କେହି ଭାବିବେ ନାହିଁ ଯେ ମୁଁ ବେମାଈକର କଥକ ଭଳି ଘଟଣା ବର୍ଣ୍ଣନା କରୁଛି, ଯାହା କି ଆମ ଦେଶରେ ସାହସିକ ଏବଂ ହାସ୍ୟରସରେ ପରିଣତ ହୁଏ । କିନ୍ତୁ ଏ ସବୁ କ୍ଷେତ୍ରରେ ପରିଣତ ବଡ଼ ଭୀଷଣ ଏବଂ ଦୁଃଖଦାୟକ ।

"ଶୁଣାଯାଏ ପରେ ରାଜକନ୍ୟା ଅନ୍ଦର ମହଲକୁ ତାଙ୍କର ଜଣେ ପ୍ରେମିକକୁ ନେଇଥିଲେ । ସେ ସେମିତ ଗୁଣବାନ ବ୍ୟକ୍ତି ନ ଥିଲେ, ମାତ୍ର ସେ ଜଣେ ଭଲ ମଣିଷ ଥିଲେ । କିନ୍ତୁ ଏତେ ହିଂସା-ଦ୍ୱେଷ-ପୂର୍ଣ୍ଣ ମଣିଷଙ୍କ ମଧ୍ୟରେ ଜହାନ୍ଆରା ବେଶୀ ଦିନ ଗୁପ୍ତ ଭାବରେ ଏହି କାର୍ଯ୍ୟ ଚଳାଇ ପାରିଲେ ନାହିଁ ।"

ତେଣୁ ଘଟଣା କ୍ରମେ ପ୍ରକଟ ହେଲା । ଏହା ମଧ୍ୟ ସମ୍ରାଟ ଶାହଜାହାଙ୍କ କାନକୁ ଗଲା । ଜହାନ୍ଆରାଙ୍କୁ ଅଜଣା ଭାବରେ ଅନୁସନ୍ଧିତ କରିବା ପାଇଁ ଦିନେ ପୂର୍ବରୁ ଦେଖା କରିବା ବାହାନାରେ ସମ୍ରାଟ ଯାଇ ଜହାନ୍ଆରାଙ୍କ କକ୍ଷରେ ପହଞ୍ଚି ଥିଲେ । ରାଜଜେମା ପିତାଙ୍କୁ ଏପରି ଅତର୍କିତ ଭାବରେ ଆସିବାର ଦେଖି ତାଙ୍କ ପ୍ରେମିକଙ୍କୁ ଲୁଚାଇବାକୁ ବେଶୀ ସମୟ ପାଇ ପାରି ନ ଥିଲେ । ତେଣୁ ସେ ତାହାଙ୍କୁ ସ୍ନାନ ପାଇଁ ରହୁଥିବା ଗୋଟିଏ ବଡ଼ କଡ଼େଇରେ ଲୁଚାଇ ଦେଇ ଥିଲେ କିନ୍ତୁ ଶାହଜାହାଁ ଏହା ଜାଣି ପାରିଥିଲେ । ତାହାପରେ ସେ ଝିଅଙ୍କ ସହିତ ବହୁକ୍ଷଣ ଯାଏ କଥାବାର୍ତ୍ତା କରିଥିଲେ ଓ ଜହାଁନ ଆରାଙ୍କ ଉପରେ ଆଦୌ ରାଗି ନ ଥିଲେ । ଶେଷରେ ସେ କହିଲେ ଯେ ରାଜଜେମା ଭାରି ଅସାବଧାନ ଓ ଅପରିଚ୍ଛନ୍ନ ଦେଖାଯାଉ ଅଛନ୍ତି; ତେଣୁ ରାଜଜେମା ନିୟମିତ ସ୍ନାନ-ଅଭ୍ୟାସ କରିବା ଉଚିତ । ତାହାପରେ ସେ ଗମ୍ଭୀର ହୋଇ ସଙ୍ଗେ ସଙ୍ଗେ ସେଠି ଥିବା ବଡ଼ କଡ଼େଇରେ ପାଣି ଗରମ କରିବାକୁ ଆଦେଶ ଦେଇ ଥିଲେ । ନପୁଂସକ (Eunuchs—ଏମାନେ ମୋଗଲ ରାଜପ୍ରାସାଦରେ ଭୃତ୍ୟ କାର୍ଯ୍ୟ କରନ୍ତି) ମାନେ ସେ ଲୋକଟି ମରିବା ଖବର ନ ଦେବାଯାଏ ସେଠାରୁ ସମ୍ରାଟ ଯାଇ ନ ଥିଲେ ।

ଏହି ଘଟଣାର କେତେକ ସମୟ ପରେ ଜହାନ୍ଆରା ପୁଣି ଆଉ ଜଣେ ସୁନ୍ଦର, ସାହସୀ ପାରସ୍ୟର ଓମରା ଯୁବକ-ନଜରତ ଖାଁଙ୍କୁ ନିଜର ଖାନ୍ସାମା ପାଇଁ ବାଛିଥିଲେ । କିନ୍ତୁ ଏହି ଯୁବକ ଏତେ ସୁନ୍ଦର ଏବଂ ଉଚ୍ଚ ଆକାଂକ୍ଷାପୂର୍ଣ୍ଣ ଥିଲେ ଯେ ଔରଙ୍ଗଜେବଙ୍କ ଦାଦା ସାହେସ୍ତା ଖାଁ (Chah-Hestkhan) ଏହାଙ୍କୁ ରାଜକନ୍ୟା ବିଭା ଦେବାକୁ ପ୍ରସ୍ତାବ କରିଥିଲେ । କିନ୍ତୁ ଶାହଜାହାଁ ଏହି ପ୍ରସ୍ତାବକୁ ପସନ୍ଦ କରି ନ ଥିଲେ, ଏବଂ ତାପରେ ସମ୍ରାଟ ଯେପରି ଶୁଣିଲେ ଯେ ଏ ସମ୍ପର୍କରେ ଗୁପ୍ତ ଅଭିସନ୍ଧି ହେଉଅଛି, ସେ ନଜରତ ଖାଁଙ୍କୁ ମାରି ଦେବାକୁ ଚେଷ୍ଟା କଲେ । ପରେ ସମ୍ରାଟ ତାହାଙ୍କୁ ସମ୍ମାନ ଦେଖାଇବା ଛଳନା କରି ପାନ ଖାଇବାକୁ

ଦେଲେ । ପ୍ରଚଳିତ ଗ୍ରନ୍ଥ ଅନୁସାରେ ସେ ସାନ ସେଠାରେ ନ ଖାଇ ରହି ପାରିଲେ ନାହିଁ (ଖାନର ବର୍ଣ୍ଣନା ମଧ୍ୟ ଭ୍ରମଣକାରୀ ଦେଇଛନ୍ତି) । ଏହି ସମ୍ଭ୍ରାନ୍ତ ଯୁବକ କିଛି ସମୟ ପରେ ଜାଣିଲେ ଯେ ତାଙ୍କ ଉପରେ ବିଷ ପ୍ରୟୋଗ ହୋଇଥିଲା । କିନ୍ତୁ ସେ ରାଜପ୍ରାସାଦରୁ ଶାନ୍ତ ଏବଂ ଆନନ୍ଦରେ ପାଲିଙ୍କିରେ ଚଢ଼ି ନିଜ ଘରକୁ ଆସିଲେ । କିନ୍ତୁ ଏହି ବିଷ ଏତେ ଉତ୍କଟ ଥିଲା ଯେ ଘରେ ପହଞ୍ଚିବା ପୂର୍ବରୁ ସେ ମରି ଯାଇଥିଲେ ।”

କିନ୍ତୁ ବର୍ଣ୍ଣିପୁରଙ୍କ ଏହି ବିବରଣୀ କେତେ ଦୂର ବିଶ୍ୱାସଯୋଗ୍ୟ ତାହା ନିରପେକ୍ଷ ଭାବରେ ବିଚାର କରିବା କଥା । ବର୍ଣ୍ଣିପୁରଙ୍କର ଏହି ବର୍ଣ୍ଣିତ ଘଟଣା ବିଷୟରେ ତାଙ୍କର ନିଜର କୌଣସି ପ୍ରତ୍ୟକ୍ଷ ଅନୁଭୂତି ନ ଥିଲା । କାରଣ ବର୍ଣ୍ଣିପୁର ଯେତେବେଳେ ଭାରତକୁ ଆସି ଥିଲେ, ସେତେବେଳେ ରାଜବଂଶରେ ଭୀଷଣ ଭ୍ରାତୃ ବିବାଦ ଓ ଯୁଦ୍ଧ । ପୁଣି ସେହି ସମୟକୁ ଜହାଁନ୍-ଆରାଙ୍କ ବୟସ ୪୯ ବର୍ଷ । ପଚିଶ ବର୍ଷର ଯୁବତୀଙ୍କ ବହୁ ଦୀର୍ଘ ଅତୀତ ଯୌବନ ବିଷୟରେ ହୁଏ ତ କୌଣସି ମିଛ ଖବର ଶୁଣି କରି ସେ ଏହା ଲିପିବଦ୍ଧ କରି ଯାଇ ଅଛନ୍ତି । ପୁଣି ଏହି ସବୁ ଉଡ଼ା ଖବରକୁ ଆମ୍ଭେମାନେ କେତେଦୂର ଐତିହାସିକ ତଥ୍ୟ ରୂପେ ଗ୍ରହଣ କରିବୁ, ତାହା ଚିନ୍ତା ଦେଖିବା କଥା ।

ଏ ଦେଶରେ କନ୍ୟା ଅବିବାହିତା ରହିବା ଆଦର୍ଶ ପ୍ରଚଳିତ ନାହିଁ । ତେଣୁ ଅବିବାହିତା କନ୍ୟାଙ୍କ ଚରିତ ପ୍ରତି ସନ୍ଦେହ ଆରୋପ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜହାଁନଆରା କାହିଁ ପୁଣି ରୂପବତୀ ରାଜ-କନ୍ୟା । ବିଳାସବ୍ୟସନ, ଧନଯୌବନ ତାଙ୍କର କିଛି ଅଭାବ ନ ଥିଲା. ତାଙ୍କ ଯୌବନରେ ହୁଏ ତ ତାଙ୍କ ପଦସ୍ଖଳନ ହୋଇ ପାରିଥାଏ । ହେବା ସ୍ୱାଭାବିକ । କିନ୍ତୁ ବର୍ଣ୍ଣିପୁର ଯେପରି ଘଟଣାମାନ୍କୁ ଚିତ୍ର କରିଛନ୍ତି; ତାହା ସେପରି ଉତ୍କଟ ନୁହେଁ । ରାଜନ୍ତଃପୁର କୂଟଚକ୍ର ଓ ବୃଥା ସମ୍ମାନ ଦମ୍ଭମ ଯୋଗୁଁ ମୋଗଲ ସମ୍ରାଟଙ୍କ କନ୍ୟା ବିବାହ ସୁଖରୁ ବଞ୍ଚିତ ହେଉ-ଥିଲେ । ଏହା, ଏକ ନୃଶଂସ ପ୍ରଥା । ଏହି ନିର୍ମମ ପ୍ରଥାକୁ ସମର୍ଥନ କରିବା ଯେପରି ଅସମ୍ଭବ, ବର୍ଣ୍ଣିପୁରଙ୍କ ବର୍ଣ୍ଣିତ କୁତ୍ସାକୁ ମଧ୍ୟ ସେପରି ଗ୍ରହଣ କରିବା ଅସମ୍ଭବ । ସେ ଯାହା ହେଉ ଦିଲ୍ଲୀର ନିଜାମ-ଉଦ୍ଦୀନ ଆଉଲିଆର ନାମରେ ଯେଉଁ ବିଶାଳ ସମାଧି-ଭବନ ଅଛି, ସେହି ଭବନର ପ୍ରାଚୀର ନିକଟରେ ଏକ ଅଳ୍ପ-ପରିସର ସ୍ଥାନରେ ଜହାଁନ୍-ଆରାଙ୍କୁ ସମାଧି

ଦଅ ଯାଇଥିଲା । ସେ ବଞ୍ଚି ଥାଉଁ ଥାଉଁ ତାଙ୍କର ଏହି ସମାଧି ନିର୍ମାଣ କରାଇ ଥିଲେ ।

ସମାଧିଟି ଶ୍ୟାମ ତୃଣାଚ୍ଛନ୍ନ । ଏହି ସମାଧିର ଶୀର୍ଷ ସ୍ଥାନରେ ମର୍ମର ପ୍ରସ୍ତରରେ ଗୋଟିଏ କବିତା ଲିପିବଦ୍ଧ ହୋଇଅଛି—

"ହୁ—ଅଲ୍‌ହାଇ—ଅଲ କରିମ୍
ବଘାଏର୍ ସବ୍‌ଜା ନ ପୋଖାଇ୍ କସେ ମଜାଇ-ର-ମରା
କେ କବର ପୋଷ୍-ଇ-ଘରିବାନ୍ ହାମୀ ଗିୟା ବସସ୍ତ
ଅଲ୍-ଫକିର୍ ଅଲ୍ ଫନୀଷ୍ଟା ଜହାନ୍ ଅରା
ମୁରିଦ୍-ଇ-ଖ୍ୱାଜ୍ ଗାନ୍-ଇ-ଚିଶ୍ତୀ
ଜନନ୍-ଇ-ଶାହ ଜାହାନ୍

ବାଦଶାହ ଅନାରୁଲ୍ଲା ବୁର୍ହାନୁ ହୁ ସନ ୧୦୯୨ ।"

ଅର୍ଥାତ୍ ସେ ଜୀବନ୍ତ ଅମୃତତ୍ତ୍ୱ । ମୋର ସମାଧିରେ ତୃଣ ବ୍ୟତୀତ ଅନ୍ୟ କୌଣସି ଆବରଣ ଆବୃତ କରି ନାହିଁ । ଦୀନ ଅନ୍ତିମଗଣଙ୍କ ପକ୍ଷରେ ଏହି ତୃଣହିଁ ଯଥେଷ୍ଟ ସମାଧି ଆବରଣ । ଶାହଜହାଁ-ଦୁହିତା ଚିଶତୀ ସାଧୁଙ୍କର ଶିଷ୍ୟା "ଜନନୁର ଫକୀର ଜାହାନଆରା ୧୦୯୨ ହିଜରା ।" ଏହାହିଁ ସକଳ ରଙ୍ଗକାପ୍ତ ବିଳାସବ୍ୟସନ ମଧ୍ୟରେ ଜହାଁନ-ଆରାଙ୍କ ବିପୁଳ ଦୈନ୍ୟ ଓ ଜୀବନବ୍ୟାପୀ ନିଃସଙ୍ଗତା କାହାଣୀର ଅମର ସ୍ୱାକ୍ଷର ।

ସତୀ ଉନ୍ନିସା—ସତୀ ଉନ୍ନିସା ଜହାଁନ ଆରାଙ୍କର ଶିକ୍ଷୟିତ୍ରୀ ଓ ଧାତ୍ରୀ ଥିଲେ । ଉନ୍ନିସା ପାରସ୍ୟ-ସମ୍ଭ୍ରାନ୍ତ-କନ୍ୟା । ଉନ୍ନିସା ବହୁ ବିଦ୍ୟା ଓ ଚିକିତ୍ସା ଶାସ୍ତ୍ରରେ ଖ୍ୟାତ ଲାଭ କରିଥିଲେ । ଉନ୍ନିସାଙ୍କ ଭାଇ ତାଲିବା-ଇ-ଅମୁଲୀ ଜଣେ ବଡ଼ ରାଜକବି ଥିଲେ । ସତୀ ମଧ୍ୟ ଏକ ଚିକିତ୍ସକ ବଂଶରେ ବିବାହ କରିଥିଲେ । ସ୍ୱାମୀର ମୃତ୍ୟୁ ପରେ ବିଧବା-ଉନ୍ନିସା ସାମ୍ରାଜ୍ଞୀ ମମତାଜ-ମହଲଙ୍କ ଅଧୀନରେ କାର୍ଯ୍ୟ ଗ୍ରହଣ କରିଥିଲେ ।

ଉନ୍ନିସାଙ୍କ ନିର୍ମଳ ଚରିତ୍ର କର୍ମ ନୈପୁଣ୍ୟ, ମିଷ୍ଟଭାଷ, ସଦାଗ୍ରହ ଶୀଘ୍ର ଦିଲ୍ଲୀ ରାଜ-ମହଲରେ ଖ୍ୟାତି ଅର୍ଜନ କରିଥିଲା । ଉନ୍ନିସା ମମତାଜ-ମହଲଙ୍କ "ମୋହର-ରକ୍ଷା" ଭାର ଗ୍ରହଣ କରିଥିଲେ । ସେ ଅତିଶୟ ସୁନ୍ଦର ଭାବରେ କୋରାଣ ଆବୃତ୍ତି କରି ପାରୁଥିଲେ । ପାରସ୍ୟ ଗଦ୍ୟ ଓ ପଦ୍ୟ ଉଭୟ ସାହିତ୍ୟ ସେ ବିଶେଷ ଭାବରେ ଆଲୋଚନା କରୁଥିଲେ । ଚିକିତ୍ସା ଶାସ୍ତ୍ର ମଧ୍ୟ ତାହାଙ୍କୁ ଅଳ୍ପ ବହୁତ ଜଣା ଥିଲା ।

ଜହାନ୍ ଜେବ-ବାନ୍—ଅଉରଙ୍ଗଜେବଙ୍କ ରାଜତ୍ୱ କାଳରେ ଡାନିଅଲ ବଂଶୀୟ ରାଜନାରୀ ଖ୍ୟାତି ଲାଭ କରିଥିଲେ । ଜହାନ୍ ଜେବ ବାନୁ ଦାରା ଶୁକୋଙ୍କ କନ୍ୟା । ଏହାଙ୍କୁ ସାଧାରଣତଃ "ଜାନୀ ବେଗମ" ନାମରେ ଡକା ଯାଉଥିଲା । ଜାନୀ ବେଗମ ଜହାନ-ଆରାଙ୍କର ଅତି ପ୍ରିୟ ପାତ୍ର ଥିଲେ । ଜାନୀ ବେଗମ ଅଉରଙ୍ଗଜେବଙ୍କ ତୃତୀୟ ପୁତ୍ର ମହମ୍ମଦ ଆଜମଙ୍କୁ ବିବାହ କରିଥିଲେ । ଜାନୀ ବେଗମ କେବଳ ବିଦୁଷୀ ନୁହନ୍ତି ବୀର ମଧ୍ୟ ଥିଲେ । ଖ୍ରୀ: ଅ: ୧୬୮୫ର କୁମାର ଆଜାମ ବିଜାପୁରର ଅବରୋଧ ସମୟରେ ହତୋତ୍ସାହ ହେଲା ବେଳେ ଜାନୀ ବେଗମ ନିଜେ ହାତୀରେ ଚଢ଼ି କ୍ଲାନ୍ତ ହତାଶ ସୈନ୍ୟ ବାହିନୀଙ୍କ ପ୍ରାଣରେ ବିଜୟ ହୁଙ୍କାର ଆଣି ଦେଇଥିଲେ ।

ଜେବ ଉନ୍ନିସା—ଅଉରଙ୍ଗଜେବ ଓ ବାନୁ ବେଗମଙ୍କର ଜେବ ଉନ୍ନିସା ଜ୍ୟେଷ୍ଠା କନ୍ୟା । ଖ୍ରୀ: ଅ: ୧୬୩୮ ଫେବୃୟାରୀ ୧୫ ତାରିଖରେ ଜେବ ଉନ୍ନିସା ଦାକ୍ଷିଣାତ୍ୟର ଦୌଲତାବାଦରେ ଜନ୍ମ ଗ୍ରହଣ କରିଥିଲେ । ଏ ଜଣେ ଉଚ୍ଚ ଶିକ୍ଷିତା ନାରୀ ଥିଲେ । ଜେବ ଉନ୍ନିସା ହାଫିଜା ମରିୟମ ନାମକ ଏକ ବିଦୁଷୀ ମୁସଲମାନ ମହିଳାଙ୍କ ଠାରୁ ଶିକ୍ଷା ଲାଭ କରିଥିଲେ । ଅତି ବାଲ୍ୟକାଳରୁ ଜେବ ଉନ୍ନିସାଙ୍କର ବିଦ୍ୟାନୁରାଗ ପରିଲକ୍ଷିତ ହୋଇଥିଲା ।

ସମୁଦାୟ କୋରାଣ ଏହାଙ୍କର କଣ୍ଠସ୍ଥ ହୋଇଥିଲା । ଫଳେ ସମ୍ରାଟ-ପିତା ଅଉରଙ୍ଗଜେବଙ୍କ ଆଗରେ ଏହି କୋରାଣ ଆବୃତ୍ତି କରି ଜେବ ଉନ୍ନିସା ତିରିଶ ହଜାର ସ୍ୱର୍ଣ୍ଣ ମୁଦ୍ରା ପାରିତୋଷିକ ଲାଭ କରିଥିଲେ । ସେ ପାର୍ଶୀ ଓ ଆରବୀ ଉଭୟ ଭାଷାରେ ରଚନା କରି ପାରୁଥିଲେ । ଆରବୀୟ ଧର୍ମ ତତ୍ତ୍ୱ ସମ୍ବନ୍ଧରେ ତାହାଙ୍କର ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ଅଉରଙ୍ଗଜେବଙ୍କ ସହିତ ଅନେକ ସମୟରେ ଜେବ ଉନ୍ନିସାଙ୍କର ଧର୍ମାଲୋଚନା ହେଉଥିଲା ।

ସେ ନିଜେ ସାହିତ୍ୟାନୁରାଗୀ ଓ ସାହିତ୍ୟିକ ଗଣଙ୍କର ଉତ୍ସାହ ଦାତ୍ରୀ ଥିଲେ । ତାହାଙ୍କ ପୁସ୍ତକାଗାରରେ ସଂଗୃହୀତ ଧର୍ମ ଓ ସାହିତ୍ୟ ସମ୍ବନ୍ଧୀୟ ଗ୍ରନ୍ଥା-ବଳୀରୁ ତାହାଙ୍କ ଜ୍ଞାନାର୍ଜ୍ଜନ ସ୍ପୃହାର ଯଥେଷ୍ଟ ପ୍ରମାଣ ମିଳେ । ସେ ରାଜବିଳାସ ବ୍ୟସନ ଅପେକ୍ଷା ଜ୍ଞାନାର୍ଜ୍ଜନ ଓ ସାହିତ୍ୟ ଚର୍ଚ୍ଚାକୁ ବେଶୀ ସୁଖକର କାର୍ଯ୍ୟ ମଣୁଥିଲେ । ବହୁ ଦୁଃସ୍ଥ ଲେଖକ ଜେବ ଉନ୍ନିସାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ଅନେକ ସୁଯୋଗ୍ୟ ମୌଲଭୀଙ୍କୁ ସେ ନାନା ପ୍ରକାର ସାହିତ୍ୟିକ କାର୍ଯ୍ୟରେ ଉପଯୁକ୍ତ ବେତନ ଦେଇ ନିଯୁକ୍ତ କରିଥିଲେ । ଅଉରଙ୍ଗଜେବ କବିତା ପ୍ରିୟ ନ ଥିଲେ; ମାତ୍ର ଏହାଙ୍କ ରାଜତ୍ୱ କାଳରେ ଜେବ ଉନ୍ନିସାଙ୍କ କରୁଣାରୁ ସେ ସମୟର କବିମାନେ ଉପଯୁକ୍ତ ଉତ୍ସାହରୁ ବଞ୍ଚିତ ହୋଇ ନ ଥିଲେ ।

କେବଳ ଉନ୍ନିସା ମଧ୍ୟ ପରମ ରୂପବତୀ ଥିଲେ । ତାଙ୍କର ରୂପ ଓ ଗୁଣ ସେ ଯୁଗରେ ଆଦର୍ଶ ସ୍ଥାନ ଲାଭ କରିଥିଲା । ଏହାଙ୍କ ଯଶଃ-ସୌରଭ ଦିଲ୍ଲୀ ମୋଗଲ୍-ମହଲ୍ ଡେଇଁ ଦେଶ ଦେଶାନ୍ତରରେ ବ୍ୟାପ୍ତ ହୋଇଥିଲା । କେବଳ ଉନ୍ନିସା ନିଜର ଭାଇ ଅକବରଙ୍କୁ ଅକୃତ୍ରିମ ଭାବରେ ସ୍ନେହ କରୁଥିଲେ । ଅକବର ନିଜ ଭଉଣୀ ଉନ୍ନିସାଙ୍କ ଆଦେଶକୁ "ହଜାସେ" ଭଳି ଗ୍ରହଣ କରୁଥିଲେ । କିନ୍ତୁ ଏହି ଭ୍ରାତୃସ୍ନେହ ଉନ୍ନିସାଙ୍କ ଘୋର ଦୁଃଖର କାରଣ ପାଲଟି ଥିଲା ।

କାରଣ ଅକବର ତାହାଙ୍କ ପିତା ଔରଙ୍ଗଜେବଙ୍କର ବିରୋଧୀ ହୋଇ ଥିଲେ । ସେତେବେଳେ ଅକବରଙ୍କୁ ଲିଖିତ ଉନ୍ନିସାଙ୍କ ସମସ୍ତ ପତ୍ର ଔରଙ୍ଗଜେବଙ୍କ ହସ୍ତଗତ ହୋଇଥିଲା । ଅପରାଧୀ ପୁତ୍ରକୁ ଦଣ୍ଡ ଦେଇ ନ ପାରି ଔରଙ୍ଗଜେବ ନିଜର ପ୍ରିୟତମା କନ୍ୟା ଉନ୍ନିସାକୁ ହିଁ ଏହି ଷଡ଼ଯନ୍ତ୍ରରେ ଲିପ୍ତ ଥିବା ଅନୁମାନ କରି ତାହାଙ୍କୁ କଠୋର କଷ୍ଟ ଦଣ୍ଡ ଦେଇଥିଲେ । ଉନ୍ନିସାଙ୍କ ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ ହୋଇ ଯାଇ ଥିଲା । ତାହାଙ୍କ ବାର୍ଷିକ ଚାରି ଲକ୍ଷ ଟଙ୍କା ବୃତ୍ତି ବନ୍ଦ ହୋଇଗଲା ଏବଂ ଦିଲ୍ଲୀ ସନ୍ନିକଟ ସଲାମଗଡ଼ର ଦୁର୍ଗରେ ସମ୍ରାଟ ନନ୍ଦିନୀ ଉନ୍ନିସା ଅମରଣ ବନ୍ଦିନୀ-ଜୀବନ ଯାପନ କରିଥିଲେ । ଖ୍ରୀଃ ଅଃ ୧୬୮୧-୧୭୦୨ ଯାଏ ୨୧ ବର୍ଷ ସେ ବନ୍ଦିନୀ ଭାବରେ ରହିଥିଲେ । କେବଳ ଉନ୍ନିସାଙ୍କ ରଚିତ ଗୋଟିଏ କବିତାର ପଂକ୍ତି ଏହିପରି:—

"ଦାଦା ଅମ୍ ଦୁଲମ୍-ବ-ସିତାନ୍
ଚନ୍ଦାଁକେ ଅଜ ଜୁଲୁମତ୍-ଇ-ହୃନ୍ଦ,
ମରବମ୍ କକ୍ ବହର-ଇ-ଖୁଦ୍
କାଫ୍ରେ ଜିଗର ପମୁଦା କୁନମ୍

ଅର୍ଥାତ୍ ମୋର ମନେ ହୁଏ ଏତେ ଅଧିକ ଅତ୍ୟାଚାର ଓ ଅବିଚାର ଦେଖି ଏହି ହିନ୍ଦୁସ୍ଥାନରେ ଅନ୍ଧକାର ମଧ୍ୟ ତ୍ୟାଗ କରି ଅନ୍ୟତ୍ର ଚାଲି ଯାଇ ଅଛି ।

ବନ୍ଦିନୀ ଭାବରେ ଉନ୍ନିସା ବର୍ଷ ବର୍ଷ କାରାଗାରର କଠିନ ଜୀବନ ଯାପନ କରିଥିଲେ । ସେହି ସମୟରେ ଦୁର୍ବହ ଜୀବନ ସମ୍ବନ୍ଧରେ ସେ ଏକ ଅତି ମର୍ମସ୍ପର୍ଶୀ କବିତା ରଚନା କରିଥିଲେ, ତାହାର ମର୍ମାନୁବାଦ ତଳେ ଦିଆଗଲା ।

"କଠିନ ଶୃଙ୍ଖଳବଦ୍ଧ ଯେତେକାଳ ଚରଣ ଯୁଗଳ
ବନ୍ଧୁ ସବୁ ତୋର ବୈରୀ, ନିଜର ଏ ଆତ୍ମୀୟ ସକଳ ।

ସ୍ୱନାମ ରଖିବାପାଇଁ ଯାହା କର ସବୁ ହେବ ମିଛ,
ଅପଣାର କହିବାକୁ ଛଳ-ବନ୍ଧୁ ପାଶେ ବସୁଅଛ ।
ଏ ଋଷ୍ଟାଦ-କାର ରହୁଁ ଶୁଖୁ ଇଚ୍ଛା
ବୃଥା ଚେଷ୍ଟା ଘୋର,
ଅରେ "ମଖଂଫୀ" ସଜ୍ଜନଙ୍କ, ଅଦ୍ଭବନ୍ଧ
ବରୂପ, କଠୋର !
ଜାଣି ରଖ-ବନ୍ଦୀ ଭୂଲ୍ଧ, ଶେଷ ଦିନ ନ ଅସିଲେ ତୋର;
ନାହିଁ ନାହିଁ, ଅଶା ନାହିଁ ଖୋଲିବ ଏ ଲୌହ କାରାଦ୍ୱାର ।

ଜେବ ଉନ୍ନିସାଙ୍କ କାରାଗାରର ଲୌହ ଦ୍ୱାର ତାହାଙ୍କ ଜୀବ-ଦଶାରେ ଖୋଲି ନ ଥିଲା । କିନ୍ତୁ ଜେବ ଉନ୍ନିସାଙ୍କ ମୃତ୍ୟୁ ପରେ ବୃଦ୍ଧ ଅଓରଙ୍ଗଜେବଙ୍କ ପାଷାଣ ହୃଦୟ ମଧ୍ୟ ବଗଳିତ ହୋଇଥିଲା ।

ଜେବ ଉନ୍ନିସାଙ୍କ ଚରିତ୍ର—ଜେବ ଉନ୍ନିସାଙ୍କ ଚରିତ୍ର ସମ୍ବନ୍ଧରେ ନାନା ଉପାଖ୍ୟାନ ଶୁଣାଯାଏ । ଏପରି କି ସାହିତ୍ୟ ସ୍ଥଳରେ ଏହାଙ୍କ ପ୍ରେମ-କାହାଣୀ ମାନ ଲିପିବଦ୍ଧ ହୋଇଅଛି । ଶୁଣାଯାଏ ସେ କବି ଥିଲେ; ତେଣୁ କଳାବନ୍ତ ଭାବରେ ସେ ନୈତିକ ବନ୍ଧନରୁ ସ୍ୱାଧୀନତା ଗ୍ରହୁଁ ଥିଲେ । ଅକିଲ୍ ଖାଁ ନାମକ ଜଣେ ସମ୍ଭ୍ରାନ୍ତ ମୁସଲମାନଙ୍କ ସହିତ ଜେବ ଉନ୍ନିସାଙ୍କ ପ୍ରେମ ଥିଲା ବୋଲି ଶୁଣାଯାଏ ।

କିନ୍ତୁ ଏହି କୁତ୍ସ-ରଚନାର ପରମ୍ପ ଅତି ଅଳ୍ପଦିନର ବୋଲି ଅନୁମିତ ହୁଏ । ଏହା ପ୍ରାଚୀନ ଐତିହାସିକମାନଙ୍କ ଇତିହାସରେ ଦେଖିବାକୁ ମିଳେ ନାହିଁ ।

ଲାହୋରର ଅହମ୍ମଦନ ବି. ଏ. ତାହାଙ୍କ "ଦୁରର-ମୁକ୍ତମ୍" (Durr-i-Muktam)ରେ ଏହା ଉଲ୍ଲେଖ କରିଥିଲେ । ସେ ଏହା ମୁନସି ମହମ୍ମଦ ଉଦ୍ଦିନ ଖିଲଜିଙ୍କ "ହେୟାତ୍-ଇ-ଜେବ ଉନ୍ନିସା" (Haiyat-i-Zeb-Unnisa)ରୁ ଗ୍ରହଣ କରିଥିଲେ ବୋଲି ସ୍ୱୀକାର କରିଅଛନ୍ତି । ଅହମ୍ମଦିନଙ୍କ ବହିରୁ ମିସେସ୍ ଉଏଷ୍ଟବ୍ରୁକ ତଥ୍ୟ ସଂଗ୍ରହ କରି ତାହାଙ୍କ (Diwan of Zebunnissa) ବହିର ମୁଖବନ୍ଧରେ ଏହି କଥା ଉଲ୍ଲେଖ କରିଥିଲେ । ଜନରବଟି ବଶ୍ଲେଷଣ କରି ଏହାର ଐତିହାସିକ ସତ୍ୟ ନିରୂପଣ କରିବା ପୂର୍ବରୁ ଘଟଣାଟି କ'ଣ ଦେଖାଯାଉ ।

୧୬୬୨ରେ ଅଓରଙ୍ଗଜେବ ଅସୁସ୍ଥ ହୋଇଥିଲେ । ବୈଦ୍ୟମାନେ ତାହାଙ୍କୁ ବାୟୁ ପରିବର୍ତ୍ତନ ପାଇଁ ଉପଦେଶ ଦେବାରୁ ସେ ତାହାଙ୍କ ପରିବାରଙ୍କ

ସହ ଲାହୋର ଯାଇଥିଲେ । ସେ ସମୟରେ ଲାହୋରର ଶାସନକର୍ତ୍ତା ଥିଲେ ଅକଲ ଖାଁ । ସେ ଜଣେ ଉଜୀରଙ୍କ ପୁଅ ଥିଲେ । ସେ ତାହାଙ୍କ ରୂପ, ସାହାସ ଏବଂ କବିତ୍ୱ ପାଇଁ ପ୍ରତିଷ୍ଠା ଲାଭ କରିଥିଲେ । ସେ ଜେବ-ଉନିସାଙ୍କ କବିତା ପଢ଼ିଥିଲେ; ତାହାଙ୍କ ରୂପ, ଗୁଣର ପ୍ରଶଂସା ବହୁ ମୁଖରେ ଶୁଣିଥିଲେ ଓ ତାହାଙ୍କୁ ଦେଖିବାକୁ ସ୍ୱତଃ ଅଗ୍ରହାନ୍ୱିତ ହୋଇଥିଲେ । ନଗରେ ପହରା ଦେବା ବାହାନାରେ ସେ ଜେବ-ଉନିସା ରହୁଥିବା ପ୍ରାସାଦର କାନ୍ଥ ପାଖରେ ବହୁତ ଥର ତାହାଙ୍କୁ ଦେଖିବା ଉଦ୍ଦେଶ୍ୟରେ ଯାଉଥିଲେ । ଦିନେ ସୌଭାଗ୍ୟକ୍ରମେ ସେ ଜେବ-ଉନିସାଙ୍କୁ ରଙ୍ଗ-ପ୍ରାସାଦ ଛାତ ଉପରେ ଦେଖିଥିଲେ । ଜେବ-ଉନିସା ସେ ଦିନ ପ୍ରତ୍ୟୁଷରୁ ଗୋଲପି ରଙ୍ଗର ଶାଢ଼ୀ ପିନ୍ଧି ଛାତ ଉପରେ ଠିଆ ହୋଇଥିଲେ । ଅକଲ ଖାଁ ତାହାଙ୍କୁ ଦେଖି ଶୁଣାଇ କହିଲେ କବିତା ପଦଟିଏ, "ପ୍ରାସାଦ ଉପରେ ଏକ ଲାଲ-ସ୍ୱପ୍ନର ଆବିର୍ଭାବ ହୋଇଛି ।" ଜେବ-ଉନିସା ଏହା ଶୁଣି ଉତ୍ତର ଦେଲେ କିନ୍ତୁ ଅନୁନୟ, ବିନୟ, ବଳତ୍କାର କିମ୍ବା ସୁନା ଦ୍ୱାରା ବି ଏହାଁ ଲାଭ ହୋଇ ପାରିବ ନାହିଁ ।"

ଜେବ-ଉନିସା ଲାହୋରରେ ରହିବାକୁ ଖୁବ୍ ସୁଖ ପାଉଥିଲେ । ସେଠାରେ ସେ ଏକ ପ୍ରମୋଦ-ଉଦ୍ୟାନ ସ୍ଥାପନ କରିଥିଲେ । ଦିନେ ଅକଲ ଖାଁ ଶୁଣିଲେ ଯେ ଜେବ-ଉନିସା ତାହାଙ୍କ ଫର୍ମା ତଦାରଖରେ ସେ ଉଦ୍ୟାନରେ ଗୋଟିଏ ମର୍ମର ପାହାଚ ନିର୍ମାଣ ଦେଖିବାକୁ ଯାଉଛନ୍ତି । ସେ ନିଜକୁ ଏକ ମିସ୍ତ୍ରୀ ଭଳି ଛଦ୍ମବେଶ କରି ମୁଣ୍ଡରେ ଚୂନ ସୁରକି ପାତ୍ର ଧରି ସେ ବଗିଚାର ପହରାବାଲାକୁ ଠକାଇ ବଗିଚା ଭିତରକୁ ପ୍ରବେଶ କରିଥିଲେ । ଜେବ-ଉନିସା ସେତେବେଳେ ତାହାଙ୍କ ସଖୀମାନଙ୍କ ସହିତରେ ଚଉପାଶ ଖେଳୁଥିଲେ । ଅକଲ ଖାଁ ତାହାଙ୍କ ନିକଟବର୍ତ୍ତୀ ହୋଇ କବିତା ପଦେ ଗାଇଥିଲେ, "ତୁମର ପାଇଁ ଧୂଳି ହୋଇ ମୁଁ ମର୍ତ୍ତ୍ୟସାରା ବୁଲିଲିଣି ।" ଜେବ ଉନିସା ସଙ୍ଗେ ସଙ୍ଗେ ତାହା ବୁଝିପାରି ଉତ୍ତର ଦେଇଥିଲେ, "ତୁମେ ଯଦି ପବନ ହୋଇଥାନ୍ତ, ତେବେ ବି ତୁମ୍ଭେ ମୋର କେଶାଗ୍ର ମଧ୍ୟ ଛୁଇଁ ପାରନ୍ତ ନାହିଁ ।"

ଏହା ପରେ ସେମାନଙ୍କର ପୁନଃ ପୁନଃ ମିଳନ ହୋଇଥିଲା ଏବଂ ଏହି ଜନରବ ଔରଙ୍ଗଜେବଙ୍କ ପାଖରେ ପହଞ୍ଚିଥିଲା । ଔରଙ୍ଗଜେବ ଦକ୍ଷିଣରେ ଏ ଖବର ପାଇ ଲାହୋରକୁ ଆସିଥିଲେ । ସେ ଏହି ବିବାହ ସମ୍ପନ୍ନ କରି ଜନରବକୁ ଚାପେଇ ଦେବାକୁ ଚାହୁଁଥିଲେ । କିନ୍ତୁ ଜେବ-

ଓଡ଼ିଶା ନିଜର ସ୍ୱାଧୀନତା ବା ସ୍ୱୟଂ ବରଣ ଚାହୁଁଥିଲେ । ବହୁତେଜସ୍ୱୀ ଯୁବକମାନଙ୍କ ପ୍ରତିଛବି ତାହାଙ୍କ ପାଖକୁ ପଠା ଯାଇଥିଲା । ଅବଶ୍ୟ ସେ ଶେଷରେ ଅକଲ ଖାଁକୁ ହିଁ ବାଛିଥିଲେ । ଔରଙ୍ଗଜେବ ଅକଲ ଖାଁକୁ ଦିଲ୍ଲୀ ତଡ଼ାଇ ପଠାଇଲେ । କିନ୍ତୁ ସେହି ସମ୍ରାଟଙ୍କ ଜେବ-ଉନ୍-ନିସାଙ୍କ ନେଇ ହତାଶ ପ୍ରେମିକ ଅକଲ ଖାଁଙ୍କ ପାଖକୁ ଲେଖି ପଠାଇଲେ, "ସମ୍ରାଟଙ୍କ କନ୍ୟାର ପ୍ରେମିକ ହେବା ପିଲାଖେଳ ନୁହେଁ । ଔରଙ୍ଗଜେବ ତୁମର ସବୁ କାର୍ଯ୍ୟ ଜାଣିଛନ୍ତି । ତୁମ୍ଭେ ଦିଲ୍ଲୀକୁ ଆସିଲେ ତୁମ୍ଭ ପ୍ରେମର ଫଳ ଭୋଗ କରିବ ।" ଅକଲ ଖାଁ ଏହି ଚିଠି ପାଇ ଦିଲ୍ଲୀ ଆସିଲେ ନାହିଁ । ସେ ବିବାହ ହେବାକୁ ଅନିଚ୍ଛା ପ୍ରକାଶ କରି ନିଜର ରାଜକର୍ମ ତ୍ୟାଗ କରିଥିଲେ ।

ଏଣେ ଜେବ ଉନ୍-ନିସା ଏହି ଖବର ପାଇ ଦୁଃଖରେ ମ୍ରିୟମାଣ ହେଲେ । ସେ ଲେଖିଲେ, "ମୁଁ ଶୁଣୁଛି ଅକଲ ଖାଁ ତାହାଙ୍କ ନିର୍ବୋଧତାରୁ ମୋତେ ସମ୍ମାନ ଦେବାରୁ ବିରତ ହୋଇଛନ୍ତି (ଏହାର ଅର୍ଥ ମଧ୍ୟ ସେ ଦୂର କରି ଯାଉଅଛନ୍ତି) ।" ଅକଲ ଖାଁ ଏହାର ଉତ୍ତର ମଧ୍ୟ ଦେଇଥିଲେ ଏକ ପଦ କବିତାରେ । "ଜ୍ଞାନୀ ଲୋକ (ଅକଲ) ଏମିତି କାମ କାହିଁକି କରିବ, ଯେଉଁଥିପାଇଁ ସେ ଅନୁତପ୍ତ ହେବ ।" ପରେ ଅକଲ ଖାଁ ଛଦ୍ମବେଶରେ ଦିଲ୍ଲୀ ଆସିଥିଲେ । ସେ ଜେବ ଉନ୍-ନିସାଙ୍କୁ ଦେଖା କରି ନିଜର ଉସ୍ତୁ ବିଷୟ ହୃଏତ ଜଣାଇଥିଲେ । ପୁଣି ସେମାନେ ଏକ ଉଦ୍ୟାନରେ ମିଳିଥିଲେ । ସମ୍ରାଟ ଏହା ଜାଣିପାରି ହଠାତ୍ ସେଠାକୁ ଆସିଥିଲେ । ଜେବ ଉନ୍-ନିସା ଅନ୍ୟସ୍ଥାନ ନ ପାଇ ଏକ ବଡ଼ ରନ୍ଧନ ପାତ୍ରରେ ତାହାଙ୍କ ପ୍ରେମିକଙ୍କୁ ଲୁଚାଇ ରଖିଲେ । ସମ୍ରାଟ ପଚାରିଲେ "ସେ ପାତ୍ରରେ କ'ଣ ଅଛି ?" ଉତ୍ତର ମିଳିଲା, ପାଣି ଗରମ ହେବାକୁ ରଖା ଯାଇଛି ।" "ତାହାହେଲେ ନିଆଁ ଲଗାଇ ଗରମ କର ।" ସମ୍ରାଟଙ୍କ ଏହି ଆଦେଶ ସଙ୍ଗେ ସଙ୍ଗେ ପାଳନ କରା ଯାଇଥିଲା । ଜେବ-ଉନ୍-ନିସା ସେତେବେଳେ ପ୍ରେମିକ ଅପେକ୍ଷା ନିଜର ସମ୍ମାନକୁ ବେଶୀ ପ୍ରିୟ ମଣିଥିଲେ । ସେ ସେହି ରନ୍ଧନ ପାତ୍ର ପାଖକୁ ଆସି ଧୀରେ କହିଲେ "ଯଦି ତୁମ୍ଭେ ମୋର ପ୍ରକୃତ ପ୍ରେମିକ, ମୋର ସମ୍ମାନ ପାଇଁ ନୀରବ ରୁହ ।" ତାଙ୍କର ଏକ କବିତାରେ ପ୍ରେମ ବିଷୟରେ ଗୋଟିଏ ଭାବ ଅଛି ।

"ପ୍ରେମିକର ଭାଗ୍ୟ କିପରି ?"

"ଏହା ସଂସାର ସୁଖପାଇଁ ଯନ୍ତ୍ରଣା ଭୋଗ କରିବାକୁ ଅଭିପ୍ରେତ ।"

ଏହା ପରେ ଜେବ-ଉନ୍-ନିସା ସାଲିମ ଗଡ଼ରେ ବନ୍ଦୀ ହୋଇଥିଲେ ।

ବର୍ତ୍ତମାନ ଏହି ଘଟଣାର ଐତିହାସିକ ସତ୍ୟ ଆଲୋଚନା କରଯାଉ :—

ଏହି ଘଟଣାଟିକୁ ବିଶ୍ଳେଷଣ କଲେ ସହଜରେ ପ୍ରତିପାଦିତ ହେବ ଯେ ବର୍ଣ୍ଣିଯ୍ରର ଏବଂ ମାନୁଚୀ ଜହାନଆରାଙ୍କ ସମ୍ବନ୍ଧରେ ଯେଉଁ ଅପବାଦ ରଟାଇ ଶେଷରେ ଡିଲ କତେଇରେ ତାହାଙ୍କ ପ୍ରେମିକଙ୍କୁ ଲଗାଇ ମାରିଥିଲେ, ସେହି ଜନରବ ପୁଣି ଅନ୍ୟ ଏକ ପ୍ରକାରରେ ଏଠାରେ ଉପସ୍ଥାପିତ କରଯାଇ ଅଛି । ଯଦି ଏ ଘଟଣା ବା ଜନରବ ସତ୍ୟ ହୋଇଥାନ୍ତା, ମାନୁଚୀ ଏହା ନ ଲେଖି ଛାଡ଼ି ନ ଥାନ୍ତେ । କାରଣ ମାନୁଚୀଙ୍କ Storia do-Mogor ପଢ଼ିଲେ ଜଣାଯାଏ ଯେ ସେ ମୋଗଲ ସାମ୍ରାଜ୍ୟର ସମସ୍ତ ମନ୍ଦ ଶବ୍ଦ ଦେବାରେ ବଡ଼ ନିପୁଣ ।

ବର୍ତ୍ତମାନ ଏହି ପ୍ରେମିକ ଅକିଲ ଖାଁଙ୍କ ବିଷୟ ଆଲୋଚନା କରଯାଉ । ଅକିଲ ଖା ଜଣେ ପ୍ରକୃତ ଐତିହାସିକ ବ୍ୟକ୍ତି । କିନ୍ତୁ ସେ ଦିଲ୍ଲୀର କୌଣସି ଉଜୀରଙ୍କ ପୁଅ ନ ଥିଲେ । ମିର ଅସ୍କାରୀଙ୍କର ପରେ ନାଁ ହୋଇଥିଲା ଅକିଲ ଖାଁ । ସେ ପାରସ୍ୟର ଅଧିବାସୀ । ଖ୍ରୀ: ଅ: ୧୬୫୨-୫୭ ମଧ୍ୟରେ ସେ ଶାହାଜହାଁଙ୍କ ଅଧୀନରେ ସରକାରୀ ଗ୍ରହଣ କରିଥିଲେ । ସେତେବେଳେ ଔରଙ୍ଗଜେବ ଦକ୍ଷିଣାତ୍ୟରେ ଦ୍ୱିତୀୟ ଥର ପାଇଁ ଶାସନକର୍ତ୍ତା । ସେ ଏହି ସମୟରେ ଔରଙ୍ଗଜେବଙ୍କ କିଲଦାର ଥିଲେ । ସେ କବି ଥିଲେ ଏବଂ ଏହାଙ୍କର ସାହିତ୍ୟିକ 'ମଖଫୀ' ନାମ ଥିଲା—"ରଜୀ" । ଔରଙ୍ଗଜେବ ଦାକ୍ଷିଣାତ୍ୟ ଛାଡ଼ି ସିଂହାସନ ଲାଗି ଯୁଦ୍ଧରେ ଯୋଗ ଦେଲାବେଳେ ଔରଙ୍ଗଜେବ ଦୌଲତାବାଦ ଦୁର୍ଗରେ (ଫେବୃୟାରୀ ୭ ତାରିଖ—ଡିସେମ୍ବର ୧୬୫୮) ତାହାଙ୍କ ପରିବାର ବର୍ଗଙ୍କୁ ଛାଡ଼ି ଆସିଥିଲେ । ସେତେବେଳେ ଅକିଲ ଖାଁ ସେ ନଗରର ଶାସନକର୍ତ୍ତା ଥିଲେ । ସେଠାରେ ସେ ୧୬୫୯ ଯାଏଁ ଥିଲେ । ତାପରେ ୧୬୬୦-୧୬୬୧ ଯାଏ ସେ ଦୋଆବ ବିଭାଗର 'ଫୌଜଦାର' ହୋଇଥିଲେ । ଖ୍ରୀ: ଅ: ୧୬୬୧ ନଭେମ୍ବରରେ ସେ ତାହାଙ୍କ ଅସୁସ୍ଥତା ଯୋଗୁଁ କାର୍ଯ୍ୟରୁ ଅବ୍ୟାହତି ନେଇଥିଲେ ଏବଂ ଲାହୋରରେ ଟ ୨୫୦୧ ପେନ୍‌ସନ ଭୋଗ କରି ବାସ କରୁଥିଲେ । ୧୬୬୩ ନଭେମ୍ବରରେ ଔରଙ୍ଗଜେବ କାଶ୍ମୀରରୁ ଲାହୋର ବାଟେ ଫେରିଲା ବେଳେ ଅକିଲ ଖାଁ ତାଙ୍କ ଗହଣରେ ଦିଲ୍ଲୀ ଆସିଥିଲେ

ଏବଂ ସମ୍ରାଟ ତାହାଙ୍କୁ ଗୋସଲ ଖାନା (Hall of Private Audince)ର ପରିଚାଳକ (Superintendent) ନିଯୁକ୍ତ କରିଥିଲେ । ଏହି କାମ ଦ୍ୱାରା ସେ ସମ୍ରାଟଙ୍କର ଅତି ପ୍ରିୟ ହୋଇଥିଲେ । ୧୬୬୬ରେ ସମ୍ରାଟ ତାହାଙ୍କୁ ତାଙ୍କ ସ୍ୱକାର୍ଯ୍ୟ ପାଇଁ ପୁରସ୍କାର ମଧ୍ୟ ଦେଇଥିଲେ । ୧୬୬୯ ଏପ୍ରିଲରେ ସେ ଓ.କ ଚୌକୀର ଦାରୋଗା ହୋଇଥିଲେ । ଏହାପରେ ଅକଲ ଖାଁଙ୍କର କୌଣସି ବର୍ଣ୍ଣନା ପ୍ରାୟ ସାତ ବର୍ଷ ଯାଏଁ ସମସାମୟିକ କାଗଜ ପତ୍ରରେ ମିଳେ ନାହିଁ । ପୁଣି ୧୬୭୬ ଅକ୍ଟୋବରରେ ତାହାଙ୍କୁ ମାସିକ ୫୦,୦୦୦ଙ୍କା ଏଲାଉନ୍ସ ଦିଆ ଯାଇଥିଲା । ୧୬୭୯ରେ ସେ ଦ୍ୱିତୀୟଥର ପାଇଁ 'ପେ ମାଷ୍ଟର' (pay master) ହୋଇ ଥିଲେ । ୧୬୮୦ରେ ସେ ଦିଲ୍ଲୀରେ ସୁବେଦାର ହୋଇଥିଲେ । ୧୬୯୬ ଯାଏ ସେ ସେହି କାର୍ଯ୍ୟରେ ରହି ମରିଥିଲେ ।

ତେଣୁ ଅକଲ ଖାଁ ଯେ ଜେଲ କଏଦରେ ପ୍ରେମଲାଗି ସିଦ୍ଧା ହୋଇ ମରି ଥିଲେ, ଏହା ଏକାବେଳକେ ମିଛ । ୧୬୫୮ରେ ଅକଲ ଖାଁ ଦୌଲତାବାଦର ଶାସନ କର୍ତ୍ତା । ସେତେବେଳେ ତାଙ୍କ ବୟସ ୩୦ ବର୍ଷ ବୋଲି ଅନୁମାନ କଲେ, ସେ ୧୬୯୬ ବେଳକୁ ୬୮ ବର୍ଷ ବୟସରେ ମରି ଥିବେ । ସେ ବିବାହ କରି ଥିଲେ ଏବଂ ତାହାଙ୍କର ନାତିମାନଙ୍କୁ ଦେଖି ମରି ଥିଲେ । ତାଙ୍କର ନାତି ଓ କୋଇଁ ପ୍ରଭୃତି ଥିଲେ ବୋଲି ମଧ୍ୟ ଐତିହାସିକ ପ୍ରମାଣ ମିଳୁ ଅଛି ।

ଏହି ଐତିହାସିକ ସତ୍ୟ ସତ୍ତ୍ୱେ ଅକଲ ଖାଁ ଏବଂ ଜେବଉନ୍ନିସାଙ୍କ ପ୍ରଣୟ କାହାଣୀ ବର୍ଣ୍ଣନାରେ ଉର୍ଦ୍ଦୁ ସାହିତ୍ୟର ବହୁପୃଷ୍ଠା ପୂର୍ଣ୍ଣ ହୋଇଅଛି । ଏପରି କି ବର୍ଣ୍ଣିୟର ଏହା ଦେଖିଛନ୍ତି ବୋଲି ଲିପିବଦ୍ଧ କରା ଯାଇଅଛି । ପ୍ରକୃତରେ ବର୍ଣ୍ଣିୟର ତାଙ୍କ ଭ୍ରମଣ-କାହାଣୀରେ ଏ ବିଷୟ କିଛି ଲେଖି ନାହାନ୍ତି ।

ଅବଶ୍ୟ ଅକଲ ଖାଁଙ୍କ ଜୀବନକାଳ ମଧ୍ୟରେ ସେ ଜେବଉନ୍ନିସାଙ୍କ ସହିତ ନାନା ସମୟରେ ସମ୍ପର୍କରେ ଆସି ଥିବେ, ଏହା ସହଜରେ ଅନୁମାନ କରାଯାଇ ପାରେ ।

| ସମୟ | ଅକଲଖାଁଙ୍କ ବୟସ | ଜେବ-ଉନିସାଂଙ୍କ ବୟସ | ସ୍ଥାନ |
|---|---|---|---|
| ୧୬୫୮-୫୯ | ୩୦-୩୧ | ୨୦-୨୧ | ଦୌଲତାବାଦ |
| ୧୬୬୩-୬୬ | ୩୫-୩୮ | ୨୫-୨୮ | ଲାହୋର ଓ ଆଗ୍ରା |
| ୧୬୬୬-୬୯ | ୩୮-୪୧ | ୨୮-୩୧ | ଆଗ୍ରା ଓ ଦିଲ୍ଲୀ |

୧୬୬୯-୭୯ ମଧ୍ୟରେ ଅକଲ ଖାଁଙ୍କ ବିଷୟରେ କୌଣସି ବିବରଣୀ ପ୍ରଶାସନସ୍ପୃକ୍ତ କାଗଜ ପତ୍ରରେ ମିଳେ ନାହିଁ । ଏଥିରୁ ସନ୍ଦେହ ହେଉଛି ଯେ ସେ ହୁଏ ତ ଏହି ସମୟରେ ସମ୍ରାଟ ଅଉରଙ୍ଗଜେବଙ୍କ ବିରାଗ ଭାଜନ ହୋଇଥିଲେ ।

... ଏହାର କାରଣ କଣ ଜେବ-ଉନ୍‌ନିସାଙ୍କ ପ୍ରେମ ହୋଇ ପାରେ ?

୧ । କିନ୍ତୁ ୧୬୮୧ରେ ଜେବ୍‌ଉନ୍ନିସା ତାହାଙ୍କ ପିତାଙ୍କ ଦ୍ୱାରା ବନ୍ଦିନୀ ହୋଇଥିଲେ । କାରଣ ସେ ତାହାଙ୍କ ବିଦ୍ରୋହୀ ଭାଇ ଆକବରଙ୍କ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ ବୋଲି ଅଉରଙ୍ଗଜେବ ବିଶ୍ୱାସ କରୁଥିଲେ । କିନ୍ତୁ ସେ ଯେଉଁ ସହରରେ ବନ୍ଦିନୀ ହେଲେ, ସେହି ଦିଲ୍ଲୀରେ ଅକଲ ଖାଁ ସୁବେଦାର ହୋଇଥିଲେ । ଯଦି ଏହି ଦୁହିଁଙ୍କ ମଧ୍ୟରେ ପ୍ରେମ ଥାଆନ୍ତା, ଅଉରଙ୍ଗଜେବ ଏହା କରିଥାନ୍ତେ କି ? ତା ପରେ ୧୬୮୦-୯୬ ଯାଏ ଅକଲ ଖାଁ ଦିଲ୍ଲୀରେ ସୁବେଦାର ହୋଇ ରହିଥିଲେ ମଧ୍ୟ, ସେ ବୃଦ୍ଧହୋଇ ଯାଇଥିଲେ । ଜେବ ଉନ୍ନିସାଙ୍କ ବୟସ ମଧ୍ୟ ସେତେବେଳେ ୪୦ ପାଖାପାଖି । ଆଉ ସେ ବନ୍ଦୀ ଜୀବନରେ ପ୍ରେମ ତାହା ବିଶ୍ୱାସ ଯୋଗ୍ୟ ନୁହେଁ ।

୨ । ଯଦି ଏମାନଙ୍କ ମଧ୍ୟରେ ପ୍ରେମ ଜାତ ହେବା ସମ୍ଭବପର ହୋଇ ଥିବ, ଏହା ଦୌଲତାବାଦ, ଲାହୋର କିମ୍ବା ଆଗ୍ରାରେ । କିନ୍ତୁ ପ୍ରେମ ଲାଗି ଡେଗ୍ ମରିବା ଜନଶ୍ରୁତି ପୂରା ମିଛ । ଏହି ସମସ୍ତ ବିବରଣୀରୁ ଜଣାଯାଏ ଦୁହିଁଙ୍କ ମଧ୍ୟରେ ପ୍ରେମ ଜାତ ହେବାପାଇଁ ସୁବିଧା ସୁଯୋଗ ଅନେକ ଥିଲା । କିନ୍ତୁ ଘଟଣା କେତେଦୂର ଯାଇଥିଲା, ତାହା ଆମ୍ଭମାନଙ୍କୁ ଅଜଣା ।

ଅନ୍ୟର ମଧ୍ୟ ଅନ୍ୟ ଏକ ଜନରବ ଶୁଣାଯାଏ ଯେ ମରହଟ୍ଟା ବୀର ଶିବଜୀ ( ୧୬୬୬ ମେ ତା: ୧୨ରିଖ ) ଆଗ୍ରାକୁ ଆସିଲବେଳେ ଜେବ ଉନ୍ନିସା ଶିବଜୀଙ୍କ ପ୍ରେମରେ ପଡିଥିଲେ । ସେତେବେଳେକୁ ଜେବ୍-ଉନ୍ନିସାଙ୍କ ବୟସ ପ୍ରାୟ ୨୮ ବର୍ଷ । ଏ ବିଷୟରେ ବଙ୍ଗଳାରେ ଭୂଦେବ ମୁଖାର୍ଜୀ ଖଣ୍ଡିଏ ଉପନ୍ୟାସ ବହି ଲେଖି ଥିଲେ ମଧ୍ୟ, ଏହାର ଐତିହାସିକ ବିବରଣୀ ପାର୍ଶ୍ୱସ୍ଥାନ କିମ୍ବା ମରହଟ୍ଟୀ କୌଣସି ସାହିତ୍ୟରେ ମିଳେ ନାହିଁ ।

ନୁରୁ ଉନ୍ନିସା—

ମୋଗଲ ସାମ୍ରାଜ୍ୟର ପତନାଭିମୁଖୀ ଅବସ୍ଥାରେ ମଧ୍ୟ ମୋଗଲ ରାଜନାରୀଙ୍କ ମଧ୍ୟରେ ଯେଉଁ ବିଦୁଷୀ ମହିଳା ଖ୍ୟାତି ଅର୍ଜ୍ଜନ କରିବାକୁ

ଷପ ହୋଇଥିଲେ ତାହାଙ୍କ ନାମ ନୂର ଉନ୍ନିସା । ଏ ବାହାଦୁର ଶାହାଙ୍କ ପ୍ରିୟ ପତ୍ନୀ । ନୂର ଉନ୍ନିସା ସୁନ୍ଦର ହୃଦ କବିତା ରଚନା କରି ପାରୁଥିଲେ । ଏହାଙ୍କୁ ମୋଗଲ-ମହଲର ସନ୍ଧ୍ୟାକାଶର ଶେଷ ଜ୍ୟୋତିଃ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ସମସ୍ତ ମୋଗଲ ରାଜ-ନାରୀମାନଙ୍କ 'ସଂକ୍ଷିପ୍ତ କିନ୍ତୁ ସତ୍ୟମୂଳକ ଚରିତ ଆଲୋଚନା କଲେ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ସେ ସମୟରେ ରାଜ ନାରୀମାନେ ମଧ୍ୟ ଶିକ୍ଷିତା ଥିଲେ । ସେମାନେ ନାରୀ-ସୁଲଭ ଲଳିତ ସୂକ୍ଷ୍ମକଳା ଚର୍ଚ୍ଚାରେ ମଗ୍ନ ରହୁଥିଲେ । ଫାର୍ଶୀ କବିତା ପାଠ ଓ ରଚନା, କୋରାଣ ଅବୃତ୍ତି, ଗୁଲସ୍ତାନ ଏବଂ "ବୋସ୍ତାନ" ପ୍ରଭୃତି ପ୍ରେମମୂଳକ ଗ୍ରନ୍ଥ ଅଧ୍ୟୟନ ସେମାନଙ୍କ ଜ୍ଞାନଚର୍ଚ୍ଚାର କ୍ଷେତ୍ର ଥିଲା । ଶିକ୍ଷା ବ୍ୟାପକ ନ ଥିଲେ ମଧ୍ୟ ସେମାନଙ୍କ ଚରିତ୍ର ଉତ୍କର୍ଷତା ସାଧିତ ହୋଇଥିଲା ।

ରାଜପ୍ରାସାଦରେ ସଙ୍ଗୀତପ୍ରବଣା, କଳାକୁଶଳା ଶିକ୍ଷୟିତ୍ରୀ, ଧାତ୍ରୀ, ନର୍ତ୍ତକୀ; ପ୍ରାର୍ଥନା-କାରିଣୀ ପ୍ରଭୃତି ନାନା ଶ୍ରେଣୀର ସହଚରୀ ମଧ୍ୟ ରହୁଥିଲେ । "ବାଦଶାହୀହାରମରେ ସାହାଜାଦୀ" ଓ ଅନ୍ୟାନ୍ୟ ରାଜନାରୀଙ୍କୁ ଶିକ୍ଷା ଦେଉଥିଲେ । ସମ୍ରାଟଙ୍କ ନିକଟକୁ ଆସୁଥିବା "ହସ୍ତଲିଖିତ ଦୈନନ୍ଦିନ ସଂବାଦ ଲିପି" ସବୁ ନାରୀମହଲରେ ନାରୀମାନେ ହିଁ ପଢ଼ି ସମ୍ରାଟଙ୍କୁ ଶୁଣାଉ ଥିଲେ । ମୋଗଲ ରାଜତ୍ୱର ଯେଉଁସବୁ ରାଜପୁରୁଷମାନଙ୍କ ବିବରଣୀ ଇତିହାସ-ସ୍ରଷ୍ଟା-ସ୍ରଷ୍ଟ୍ରୀମାନଙ୍କ ଦୃଷ୍ଟି ଆକର୍ଷଣ କରେ, ସେମାନଙ୍କ ଶୈଶବ ଦୋଳା ଯେ ଏହି ମୋଗଲ-ରାଜ-ନାରୀ-ମାନଙ୍କ ଦ୍ୱାରା ଗଠିତ ହୋଇଥିଲା ଏବଂ ପ୍ରକାରାନ୍ତରେ ଏମାନେ ଯେ ମୋଗଲ ସାମ୍ରାଜ୍ୟର ପରିଚାଳିକା ଥିଲେ; ଏହି ସତ୍ୟଟିକୁ ଆମ୍ଭମାନଙ୍କୁ ଗଭୀର ଭାବରେ ଆଜି ସ୍ମରଣ କରିବାକୁ ହେବ ।

---

ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାଶ, ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ—୨